# ଯା ଦେବୀ ବିଦ୍ୟା ରୂପେଣ



ଲେଖକ:
**ଶ୍ରୀ ଗଣେଶ ପ୍ରସାଦ ପଣ୍ଡା**

ଯା ଦେବୀ ବିଦ୍ୟା ରୂପେଣ

ଲେଖକ :

**ଗଣେଶ ପ୍ରସାଦ ପରିଡା**


ପ୍ରକାଶକାଳ :

ରାସ ପୂର୍ଣ୍ଣିମା ତା ୧୪, ନଭେମ୍ବର—୧୯୭୮

ପ୍ରଚ୍ଛଦପଟଶିଳ୍ପୀ :

**ଜଗଦୀଶ କାନୁନ୍‌ଗୋ**

ପ୍ରକାଶକ :

**ଡାଇମଣ୍ଡ ପବ୍ଲିଶର୍ସ**

ଚେଲେଙ୍ଗା ବଜାର

କଟକ-୯

ପ୍ରାପ୍ତିସ୍ଥାନ :

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର

କଟକ-୨

ମୁଦ୍ରଣ :

**ମହାଲକ୍ଷ୍ମୀ ପ୍ରେସ**

ସାହେବଯାଦା ବଜାର

କଟକ-୨

ମୂଲ୍ୟ— **ଆଠଟଙ୍କା**

ଓଡ଼ିଶାର ପ୍ରସିଦ୍ଧ ରାଜନୀତିଜ୍ଞ ତଥା ସାହିତ୍ୟିକ
ଶ୍ରୀ ବନମାଳୀ ପଟ୍ଟନାୟକଙ୍କ
କର କମଳରେ

ଗଣେଶ ପ୍ରସାଦ ପରିଡ଼ା

# ନିଜକଥା

ଆଧୁନିକ ଓଡ଼ିଆ ସାହିତ୍ୟରେ ଦଶମହାବିଦ୍ୟାଙ୍କ ବିଷୟ ଜାଣିବାକୁ ସେଭଳି କିଛି ଗ୍ରନ୍ଥ ନାହିଁ । ଯାହା ଅଛି ତାହା ସଂସ୍କୃତ ଓ ପୁରାଣ ରୂପରେ । ଓଡ଼ିଶାର ବିଭିନ୍ନ ପ୍ରକାଶକ ଦଶମହାବିଦ୍ୟା ନାମକ ଗ୍ରନ୍ଥ ଛାପିଛନ୍ତି । ମାତ୍ର ସେହି ଗ୍ରନ୍ଥରେ ମହାବିଦ୍ୟାଙ୍କ ଧ୍ୟାନ-ମନ୍ତ୍ର-ସ୍ତୋତ୍ରମଣ୍ଡଳ ଆଦି ଛଡ଼ା ତତ୍ତ୍ୱ ବିଷୟରେ କିଛି ନାହିଁ । ଦୀର୍ଘଦିନ ଧରି ପତ୍ର, ପତ୍ରିକାରେ ମୁଁ ଶକ୍ତି ତଥା ତନ୍ତ୍ର ଉପରେ ଲେଖିବା ଦ୍ୱାରା ବହୁ ପ୍ରତିଷ୍ଠିତ ସାହିତ୍ୟିକ ଦଶମହାବିଦ୍ୟାଙ୍କ ବିଷୟରେ ଜାଣିବାକୁ ପ୍ରଶ୍ନ କରନ୍ତି । ମୁଁ ଯେତିକି ଜାଣେ ତାହା ତାଙ୍କ ଆଗରେ କୁହେ । ଏକଦା ଝଙ୍କାରରେ ମୁଁ ଦଶମହାବିଦ୍ୟା ସମ୍ବନ୍ଧରେ ଏକ ପ୍ରବନ୍ଧ ଦେଇଥିଲି । ସେହି ପ୍ରବନ୍ଧ ପାଠକରି ସୁଗାଳ୍ପିକ ଅଧ୍ୟାପକ ଡଃ କୃଷ୍ଣପ୍ରସାଦ ମିଶ୍ର ମୋତେ ପ୍ରଶଂସା କରି ସେହିଭଳି ଏକଲେଖା, ପ୍ରକାଶ ପାଇବାକୁଥିବା ମାନସପାଇଁ ଏକପ୍ରବନ୍ଧ ଦେବାକୁ ଅନୁରୋଧ ଜଣାଇଲେ ।

ଦଶମହାବିଦ୍ୟାଙ୍କ ବିଷୟ ପ୍ରବନ୍ଧ ଆକାରରେ ଲେଖିବା ଅପେକ୍ଷା ଗଳ୍ପାକାରରେ ଲେଖିଲେ ଲୋକମାନଙ୍କ ପଢ଼ିବା ପାଇଁ ସୁଗମ ହେବ ବୋଲି ଭାବିଲି । କେତୋଟି ଅଧ୍ୟାୟ ଲେଖି ଆସନ୍ତାକାଲି ଓ ଉଗରରେ ମଧ୍ୟ ପ୍ରକାଶ କଲି । ବହୁବନ୍ଧୁ ତାହା ପଢ଼ି ପ୍ରଶଂସା କଲେ । ସେହି ଧାରାରେ ସମ୍ପୂର୍ଣ୍ଣ ଦଶମହାବିଦ୍ୟାଙ୍କ ତତ୍ତ୍ୱ ଲେଖିଲି ପରେ ବହୁବର୍ଷ ମଧ୍ୟ ଗତ ହୋଇଯାଇଛି ଛାପିବା ପାଇଁ । ମୁଁ ଯଦି ଦଶମହାବିଦ୍ୟା ପ୍ରବନ୍ଧାକାରରେ ଲେଖିଥାନ୍ତି ତେବେ ଆଉ କିଛି ଐତିହାସିକତତ୍ତ୍ୱ ପରିବେଷଣ କରିପାରିଥାନ୍ତି । ତାହା ଗବେଷକଙ୍କୁ ଖୋରାକ ଯୋଗାଇଥାନ୍ତା ।

ଐତିହାସିକଙ୍କ ମତରେ କାଳୀ ବୌଦ୍ଧ କୁରୁକୁଲ୍ଲାରୁ ଆସିଛନ୍ତି । ଓଡ଼ିଶାର କାଳୀପୂଜାରେ କୁରୁକୁଲ୍ଲାଙ୍କୁ ମଧ୍ୟ ଆରାଧନା କରାଯାଏ । ମୂର୍ତ୍ତି କଳ୍ପନା ହୁଏତ ବୌଦ୍ଧ ସଂସ୍କୃତିରୁ ଆସିପାରେ । କିନ୍ତୁ ମୁଣ୍ଡକ ଉପନିଷଦରେ ଅଗ୍ନିର ସପ୍ତଜିହ୍ୱା ମଧ୍ୟରୁ କାଳୀ ଏକଜିହ୍ୱା । ତନ୍ତ୍ରଶାସ୍ତ୍ର

କହେ ଆଦ୍ୟରେ କାଳୀ ଥିଲେ । ସେତେବେଳେ ସୂର୍ଯ୍ୟ ନ ଥିଲେ କି ଚନ୍ଦ୍ର ନ ଥିଲେ ତେଣୁ ଆଦ୍ୟା ହେବେ କାଳୀ ଶକ୍ତି ତା । ସେହିପରି ଦ୍ୱିତୀୟ ମହାବିଦ୍ୟା ତାରା ନାମ ବୌଦ୍ଧ ତାନ୍ତ୍ରିକଠାରୁ ଆସିଛି । ମାତ୍ର ବୌଦ୍ଧ ତାରାଙ୍କ ରୂପ ସହିତ ହିନ୍ଦୁ ତାରାଙ୍କ ରୂପର କିଛି ସମ୍ପର୍କ ନାହିଁ । ହିନ୍ଦୁ କାଳୀଙ୍କର ତାରା ହିଁ ଅନ୍ୟରୂପ । ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ ଧୂମାବତୀ, ମାତଙ୍ଗୀ, କମଳା ମହାବିଦ୍ୟାଙ୍କ ସ୍ୱରୂପ ବୌଦ୍ଧ ଦେବୀଙ୍କ ଭଳି, କେବଳ ସାମାନ୍ୟ ମାତ୍ର ପ୍ରଭେଦ । ଧୂମାବତୀ ବୌଦ୍ଧ ଦ୍ୱିଭୁଜା ବଜ୍ରମୁଣ୍ଡାଙ୍କ ଅନ୍ୟ ରୂପ କହିଲେ ଅତ୍ୟୁକ୍ତି ହେବ ନାହିଁ । କମଳା ତ ବୌଦ୍ଧ ଲକ୍ଷ୍ମୀଙ୍କ ଭଳି । ରତ୍ନଗିରି ତୋରଣର ମଧ୍ୟଭାଗରେ ଠିକ୍ ଲକ୍ଷ୍ମୀଙ୍କ ଭଳି ମୂର୍ତ୍ତି ରହିଛନ୍ତି ।

ପୁରାଣ ମଧ୍ୟରେ ଦଶମହାବିଦ୍ୟା ସପ୍ତମ ଅଷ୍ଟମ ଶତାବ୍ଦୀବେଳକୁ ସ୍ଥାନ ପାଇଲେ । ତା ପୂର୍ବରୁ ତନ୍ତ୍ର ହିଁ କେବଳ ଥିଲା । ବେଦ ବହିର୍ଭୂତ କାର୍ଯ୍ୟାନୁଷ୍ଠାନରେ ମନ ପ୍ରବେଶ କରିବାରୁ ବୁଦ୍ଧ ତାହାର ନିରାକରଣ ପାଇଁ ଚେଷ୍ଟା କଲେ । ପ୍ରଜ୍ଞା ପାରମିତାରୁ ଜଣାଯାଏ ନିଜେ ବୁଦ୍ଧ ପାରମିତାନୟ ଓ ମନ୍ତ୍ରନୟର ଦ୍ରଷ୍ଟା । ବୈଦିକ ଯୁଗରେ ମୂର୍ତ୍ତି ପୂଜା ନ ଥିଲା । ପରବର୍ତ୍ତୀ ସମୟ ଅର୍ଥାତ୍ ବୌଦ୍ଧ ଯୁଗରୁ ମୂର୍ତ୍ତି ପୂଜା ପ୍ରଚଳିତ ହେଲା । ପୁରାଣ ଗୁପ୍ତଯୁଗରେ ଲିଖିତ ହୋଇଛି । ଇତିହାସରୁ ଜଣାଯାଏ ଶେଷ ମୌର୍ଯ୍ୟ ସମ୍ରାଟ ବୃହଦ୍ରଥଙ୍କୁ ପୁଷ୍ୟମିତ୍ର ହତ୍ୟା କଲେ । ତାପରେ ଆରମ୍ଭ ହେଲା ପୁରାଣ ଲେଖା । ପୁରାଣରେ ଯେତେଦୂର ସାଧ୍ୟପାଏ ବ୍ରାହ୍ମଣ୍ୟ ଧର୍ମର ବିକାଶ ଓ ବୌଦ୍ଧ ଧର୍ମର ବିନାଶ ସାଧନ ପାଇଁ ଚେଷ୍ଟା କରାଗଲା ।

ଓଡ଼ିଶାରେ ସପ୍ତମ ଅଷ୍ଟମ ଶତାବ୍ଦୀବେଳକୁ ତନ୍ତ୍ର ବିଜୟ ଡଙ୍କା ବଜାଇ ଚାଲିଥିଲା । କିନ୍ତୁ ଦଶମହାବିଦ୍ୟା ଓଡ଼ିଶାକୁ ବହୁ ପରେ ଆସିଛନ୍ତି । ଦଶମହାବିଦ୍ୟା ହିନ୍ଦୁତନ୍ତ୍ରର ଦେବତା । ବୌଦ୍ଧଙ୍କର ସମସ୍ତ ଦେବ ଦେବୀଙ୍କୁ ହିନ୍ଦୁମାନେ ଗ୍ରହଣ କରିଥିଲେ ମଧ୍ୟ ବହୁ ବୌଦ୍ଧ ଦେବତା ଏପର୍ଯ୍ୟନ୍ତ ଅଜଣା ହୋଇ ରହିଛନ୍ତି । ଚଉଷଠୀ ଯୋଗିନୀଙ୍କର ମୂର୍ତ୍ତି ଥିଲେ ମଧ୍ୟ ତାଙ୍କର ଧ୍ୟାନମନ୍ତ୍ର ଆଦି ମିଳେ ନାହିଁ । ଉତ୍କଳର ମହାରାଜାଙ୍କ ବୌଦ୍ଧ ବିତାଡ଼ନ ଫଳରେ, ବୌଦ୍ଧମାନେ ତାଙ୍କର ତନ୍ତ୍ରଶାସ୍ତ୍ର ସବୁ ଧରି ଚାଲିଯାଇଥିଲେ । ତେଣୁ ବୌଦ୍ଧତନ୍ତ୍ରର ବହୁ ଦେବତା ଥିଲେ ମଧ୍ୟ ସେହି ଦେବତାଙ୍କ ଧ୍ୟାନ ମନ୍ତ୍ରାଦି ମିଳେ ନାହିଁ ।

ବର୍ତ୍ତମାନର ଦୁର୍ଗା ବୌଦ୍ଧଯୁଗରେ ପ୍ରଜ୍ଞାପାରମିତା ନାମରେ ଉପାସିତ ହେଉଥିଲେ । ସେତେବେଳେ ପ୍ରଜ୍ଞାପାରମିତା ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ଓ ମନୁଷ୍ୟ ଅଜ୍ଞାନ ଦାନବ ହରଣ କରୁଥାଇଥିଲେ । ଯାଜପୁରର ବଉଳା ବୌଦ୍ଧଙ୍କ ପ୍ରଜ୍ଞାପାରମିତାଙ୍କ ବ୍ୟତୀତ ଆଜ କେହି ନୁହନ୍ତି । ସେତେବେଳେ ପ୍ରଜ୍ଞାପାରମିତା ଦ୍ୱିଭୁଜା ଥିଲେ । ପରବର୍ତ୍ତୀ ସମୟରେ ସେ ଚତୁର୍ଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା ରୂପେ ଦେଖା ଦେଲେ । ମନୁଷ୍ୟ ମଧ୍ୟ ପରିବର୍ତ୍ତିତ ହୋଇ ଅସୁରରେ ପହଞ୍ଚିଲା । କାରଣ ବୌଦ୍ଧ ତାନ୍ତ୍ରିକମାନେ ମଣିଷର ଅଜ୍ଞାନତାକୁ ସେହିରୂପରେ ଦର୍ଶାଇ ଥିଲେ । ଜ୍ଞାନ ମସ୍ତିଷ୍କଦ୍ୱାରା ପରିଚାଳିତ ଥିବାରୁ ମସ୍ତକରେ ପଶୁର ମସ୍ତକ ଯୁକ୍ତ କରିବାଦ୍ୱାରା ଅଜ୍ଞାନ ବୋଲି ଧାରଣା କରାଗଲା । କିନ୍ତୁ ମନୁଷ୍ୟ ଶରୀରରୁ ଅର୍ଦ୍ଧନିଷ୍କ୍ରାନ୍ତ ମଣିଷ ମହିଷାସୁର ପୁରାପୁରି ହିନ୍ଦୁତନ୍ତ୍ରର । କିନ୍ତୁ ଆଜି ହିନ୍ଦୁ ସମସ୍ତଙ୍କୁ ଏପରିକି ଜୈନଙ୍କ ଶାସନ ଦେବୀଙ୍କୁ ମଧ୍ୟ ନିଜର କରି ନେଇଛି । ସେହିଭଳି ସପ୍ତମାତୃକା ପ୍ରଥମେ ବୌଦ୍ଧମାନଙ୍କର ଦେବତା ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ହିନ୍ଦୁମାନେ ତାଙ୍କୁ ନିଜର ବୋଲି ଗ୍ରହଣ କରିଛନ୍ତି, ଦେଖିବାକୁ ଗଲେ ବର୍ତ୍ତମାନ ଯେତେ ଦେବତା ହିନ୍ଦୁମାନେ ଆରାଧନା କରୁଛନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ବୌଦ୍ଧ ଜୈନଙ୍କର ଦେବତା ଥିଲେ ।

ଓଡ଼ିଆରେ ଦଶମହାବିଦ୍ୟାଙ୍କ ବହୁ ପୋଥି ରହିଛି । କେତେକ ପୋଥିରେ ମନ୍ତ୍ର ଭୁଲ୍ ଥିବାର ଦେଖାଯାଏ । ଏହା ମଧ୍ୟ କେତେକ ସ୍ଥଳରେ ଭୁଲ୍ ଅଛି । ଏଭଳି ଭୁଲ୍ ରହିବାର ଏକମାତ୍ର କାରଣ ହେଉଛି, କୌଣସି ସାଧାରଣ ଲୋକ ମନ୍ତ୍ର ସାଧନା କରିବାକୁ ଗଲେ ଗୁରୁଙ୍କ ସମୀପବର୍ତ୍ତୀ ହେବାକୁ ବାଧ୍ୟ ହେବ । ତା ନ ହେଲେ ତନ୍ତ୍ରସାଧନାରେ କୃତକାର୍ଯ୍ୟ ହୋଇପାରିବ ନାହିଁ । ଏହାକୁ ଗୁରୁକୂଟ କୁହାଯାଏ ।

ମା' ଦେବୀ ବିଦ୍ୟାରୂପେଣ ତନ୍ତ୍ରସାଧନ ଗ୍ରନ୍ଥ ନୁହେଁ । କେବଳ ତନ୍ତ୍ର ଓ ବିଷୟ ଜାଣିବା ଉଦ୍ଦେଶ୍ୟରେ ଲେଖିଛି ଲେଖିସାରି ଅଧ୍ୟାପକ ଚିତ୍ତରଞ୍ଜନ ଦାସଙ୍କୁ ତାହା ଦେଖାଇଲି । ସେ ତାହା ଆମୂଳଚୂଳ ପାଠକରି ଗ୍ରନ୍ଥଟିର ସପକ୍ଷରେ ମତପ୍ରଦାନ କଲେ । ତାପରେ ଛପିବେଇଲା କଥା । ମାତ୍ର ଏସବୁ ଗ୍ରନ୍ଥ ଛପିବାକୁ ଓଡ଼ିଶାରେ ପ୍ରକାଶକମାନେ ସେତେ ଆଗ୍ରହୀ ନୁହନ୍ତି । ପୁଣି ଯେ କେହି ଏଗ୍ରନ୍ଥ ଛପିପାରିବେ ନାହିଁ । ସମସ୍ତଙ୍କ ପାଖରେ ତନ୍ତ୍ର ଦେବତା କଣ ଆତ୍ମପ୍ରକାଶ କରିବେ ?

ମୋର ଲେଖକ ବନ୍ଧୁ ପଣ୍ଡିତ ନୀଳମଣି ମିଶ୍ର ଯେଉଁ ଓଡ଼ିଶା ସଂଗ୍ରହାଳୟର ପୋଥି ବିଭାଗରେ ଅଛନ୍ତି ଏବଂ ଓଡ଼ିଶା ସଂସ୍କୃତି ବିଷୟରେ ସମ୍ୟକ ଅବଗତ ସେ ପାଣ୍ଡୁଲିପିଟି ଦେଖିଥିଲେ । ସେ ତାଙ୍କର ମତ ଲେଖିଛନ୍ତି । ମୋର ଧାରଣା 'ଯା ଦେବୀ ବିଦ୍ୟାରୂପେଣ' ଓଡ଼ିଆ ପାଠକଙ୍କୁ କିଛି ତଥ୍ୟ ଯୋଗାଇବ ।

ଏହି ଗ୍ରନ୍ଥର ପ୍ରଚ୍ଛଦପଟ ଆଙ୍କିଛନ୍ତି ଓଡ଼ିଶା ସାହିତ୍ୟ କଥା କଳା ଏକାଡେମୀର ସହକାରୀ ସମ୍ପାଦକ ଶ୍ରୀ ଜଗନ୍ନାଥ କାନୁନଗୋ । ଏହି ଚିତ୍ରଟି ଓଡ଼ିଶାର ବିଖ୍ୟାତ ଲିଙ୍ଗରାଜ ମନ୍ଦିରର ଭୁବନେଶ୍ୱରୀ (ପାର୍ବତୀ)ଙ୍କ ଚିତ୍ର ।

ଲେଖକ

ତା ୧୪ । ୧୧ । ୧୯୬୮

ତନ୍ତ୍ର ଆଲୋଚକ ଶ୍ରୀ ଗଣେଶ ପ୍ରସାଦ ପରିଡା ଓଡ଼ିଶାର ତନ୍ତ୍ରଶାସ୍ତ୍ରକୁ ସୁବୋଧ ଆଖ୍ୟାୟିକା ମାଧ୍ୟମରେ ପରିବେଷଣ କରିବାରେ ପ୍ରଥମ ଲେଖକ । ତନ୍ତ୍ରଶାସ୍ତ୍ର ଏକ ଦୁର୍ବୋଧ ଯୋଗଶାସ୍ତ୍ର । ସାଧନ ମାଧ୍ୟମରେ ଯୋଗ ଓ ଭୋଗକୁ କରାୟତ୍ତ କରିବା କେବଳ ତନ୍ତ୍ରଶାସ୍ତ୍ର ଦ୍ୱାରା ହିଁ ସମ୍ଭବ ହୋଇପାରେ । କିନ୍ତୁ ବୌଦ୍ଧତନ୍ତ୍ର ଯାନଦ୍ୱାରା ତନ୍ତ୍ରଶାସ୍ତ୍ରର ଦୁରୁପଯୋଗ ହୋଇ ଲୋକସମାଜରେ ନନ୍ଦିତ ତଥା ଅବହେଳିତ ହୋଇଥିଲା । ବିଶେଷତଃ ସିଦ୍ଧ ଓ ନାଥ ପନ୍ଥୀମାନଙ୍କ ପ୍ରଭାବ ଫଳରେ ତନ୍ତ୍ରଶାସ୍ତ୍ର ଅଧିକ ସନ୍ଦେହାସ୍ପଦ ହୋଇଉଠିଲା ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶର ଅଭ୍ୟୁତ୍ଥାନ ଫଳରେ ଓଡ଼ିଶାରେ ବୈଷ୍ଣବମତ ପ୍ରଚରିତ ହୁଅନ୍ତେ, ଧୀରେ ଧୀରେ ତନ୍ତ୍ରମତ ଜନମାନସରୁ ଲୋପ ହେବାକୁ ବସିଲା । କିନ୍ତୁ ସମଗ୍ର ଓଡ଼ିଶାରେ ତନ୍ତ୍ରପୀଠଗୁଡ଼ିକ ପୂର୍ବମର୍ଯ୍ୟାଦା ବଜାୟ ରଖି ତିଷ୍ଠି ରହିପାରିଥିଲା ।

ଯୁଗଥିଲା—ଯେତେବେଳେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ତନ୍ତ୍ରଶାସ୍ତ୍ରର ଆରାଧ୍ୟ ଦେବ ରୂପେ ଓଡ୍ର ପୀଠର ଭୈରବ ସାଜିଥିଲେ । ବିମଳା ଓ ବିରଜା ମହାଦେବୀ ରୂପେ ସମଗ୍ର ଭାରତୀୟ ସାଧକମାନଙ୍କ ଦ୍ୱାରା ପୂଜିତା ହୋଇଥିଲେ । କିନ୍ତୁ ଗଙ୍ଗରାଜାମାନଙ୍କ ପ୍ରଚେଷ୍ଟା ଫଳରେ ବୈଷ୍ଣବମତ ପ୍ରତିଷ୍ଠାଲାଭ କରିଥିଲେ ହେଁ, ତନ୍ତ୍ରଶାସ୍ତ୍ରର ସପ୍ତମାତୃକା, ଦଶମହାବିଦ୍ୟା ଜନମାନସକୁ ଉଦ୍‌ବୁଦ୍ଧ କରାଇବାରେ ସକ୍ଷମ ହୋଇଥିଲେ ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶା ପରାଧୀନ ହୋଇଯାଆନ୍ତେ, ଏଠାକାର ଧର୍ମମତ ଉପରେ କୁଠାରାଘାତ ହେଲା, ଧାର୍ମିକ ପୀଠ, ବିଶେଷତଃ ତନ୍ତ୍ରପୀଠଗୁଡ଼ିକ ଅବହେଳିତ ଅବସ୍ଥାରେ ରହିଥିଲା । ତେଣୁ ଓଡ଼ିଶାର ତନ୍ତ୍ରସାଧକ ଓ ତନ୍ତ୍ରଗ୍ରନ୍ଥଗୁଡ଼ିକ ଦୁଷ୍ପ୍ରାପ୍ୟ ହୋଇଉଠିଲା । ବିଶେଷତଃ ହୀରାପୁରର ଚଉଷଠୀ ଯୋଗିନୀ ଓ ରାଣୀପୁର ଝରିଆଲର ଚଉଷଠୀ ଯୋଗିନୀ ପରି ପ୍ରସିଦ୍ଧ ତନ୍ତ୍ରପୀଠ ଓଡ଼ିଶାରେ ମିଳୁଥିବାବେଳେ, ଏଠାରେ ତନ୍ତ୍ରଶାସ୍ତ୍ରର ଉନ୍ନତ ପ୍ରାମାଣିକ ଗ୍ରନ୍ଥ ନ ମିଳିବା ବାସ୍ତବିକ ବିସ୍ମୟକର ବିଷୟ ।

ତେଣୁ ଆଲୋଚକମାନେ ମୁଖ୍ୟତଃ କିମ୍ବଦନ୍ତୀ ଉପରେ ଆସ୍ଥାରଖି ତନ୍ତ୍ରଶାସ୍ତ୍ର ଓ ତନ୍ତ୍ରପୀଠ ସମ୍ବନ୍ଧରେ ଆଲୋଚନା କରିଥାନ୍ତି ।

ଶ୍ରୀ ପରିଜା ଝଙ୍କଡ଼ର ସାରଳା ପୀଠର ଅଧିବାସୀ ହୋଇଥିବାରୁ ପରମ୍ପରା କ୍ରମେ ତନ୍ତ୍ରପୀଠ ଓ ତାନ୍ତ୍ରିକ ଦେବୀମାନଙ୍କ ସମ୍ବନ୍ଧରେ ବହୁ ଆଖ୍ୟାୟିକା ଶୁଣିଛନ୍ତି । ସେହି ଆଖ୍ୟାୟିକାଗୁଡ଼ିକ ନିଜର ସ୍ୱତନ୍ତ୍ର ପ୍ରସୂତ କଳ୍ପନା ବଳରେ କେତେଗୁଡ଼ିଏ ଚିତ୍ତାକର୍ଷକ କାହାଣୀ ରଚନା କରି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରୁଛନ୍ତି ।

ପ୍ରସ୍ତୁତ ପୁସ୍ତକ 'ଯା ଦେବୀ ବିଦ୍ୟା ରୂପେଣ'ରେ ସନ୍ନିବେଶିତ କାହାଣୀଗୁଡ଼ିକ ଦେବାଧିଦେବ ଶିବ ଓ ମହର୍ଷି ନାରଦଙ୍କ କଥୋପକଥନ ଛଳରେ ଲିଖିତ ହୋଇଛି । ଦଶମହାବିଦ୍ୟା ବହୁ ପରବର୍ତ୍ତୀ କାଳରେ ଅର୍ଥାତ୍ ଖ୍ରୀଷ୍ଟୀୟ ସପ୍ତମ ଅଷ୍ଟମ ଶତାବ୍ଦୀବେଳକୁ ଓଡ଼ିଶାରେ ପ୍ରବେଶ କରିଥିଲେ ହେଁ, ସେମାନଙ୍କ ସମ୍ବନ୍ଧରେ ବେଶୀ କିଛି ତଥ୍ୟ ଆଲୋଚକମାନେ ଜାଣି ନାହାନ୍ତି । ଶ୍ରୀ ପରିଜା ମହୋଦୟ ସାବଲୀଳ ତଥା ରୋଚକ ଶୈଳୀରେ 'ଦଶମହାବିଦ୍ୟାତତ୍ତ୍ୱ'କୁ ଲେଖି ପାଠକ ପାଠିକାମାନଙ୍କ ହାତରେ ଅର୍ପଣ କରୁଛନ୍ତି । ଏହାଦ୍ୱାରା ଓଡ଼ିଶାର ତନ୍ତ୍ର ସମ୍ବନ୍ଧରେ ଆଲୋଚନା କରୁଥିବା ଗବେଷକ ତଥା ଆଗ୍ରହୀ ପାଠକ ପାଠିକାମାନେ 'ମହାବିଦ୍ୟା'ଙ୍କ ସମ୍ବନ୍ଧରେ ବିଶେଷ ଧାରଣା କରିପାରିବେ ।

ମୋର ବିଶ୍ୱାସ, ପୁସ୍ତକଟି ଓଡ଼ିଶାର ଜନସାଧାରଣଙ୍କ ଦ୍ୱାରା ସମାଦୃତ ହେବ ।

ନୀଳମଣି ମିଶ୍ର
ତା ୧୮-୧୧-୧୯୭୮

ବୈଭବଶାଳୀ କୈଳାସପୁରୀର ସେ ବୈଭବ ଆଜି ନାହିଁ । ଯେଉଁଠୁ ଉଠୁଥିଲା ଶଙ୍ଖ, ଶିଙ୍ଗା ଡମ୍ବରୁର ବାଦ୍ୟଘୋଷ, ନୂପୁରର ନିକ୍ୱଣ, ବିଭିନ୍ନ ରାଗର ସଙ୍ଗୀତ ଝଙ୍କାର ସେଠାରୁ ଉଠୁଛି ହା ହତୋସ୍ମି ଧ୍ୱନି । ଆଲୋକିତ ସଙ୍ଗୀତ ମୁଖର ନୃତ୍ୟ ମଣ୍ଡପ ଅନ୍ଧକାରରେ ପରିପୂର୍ଣ୍ଣ । ମନ୍ଦବାତାଲୋଡ଼ିତ ଘନ ବୃକ୍ଷର ବୀଣା-ନିନ୍ଦିତ-ସ୍ୱନ ସନ୍ନତ ବୃକ୍ଷମାନଙ୍କ ପଲ୍ଲବ ନିଚୟ ନୀରବ, ନିସ୍ତବ୍ଧ, ସ୍ଥାଣୁପ୍ରାୟ । ପ୍ରସ୍ଫୁଟିତ କୁସୁମର ମନ୍ଦ ମନ୍ଦ ଗନ୍ଧ ଆମୋଦିତ କରୁନାହିଁ । କୈଳାସ ପୁରୀକୁ ଶୁଭୁନାହିଁ ଜନ ମନୋହାରୀ ପକ୍ଷୀର କୂଜନ । ବେଗଗାମୀ ସ୍ରୋତସ୍ୱିନୀ ଗଙ୍ଗାର କଳ କଳ ନାଦ ସିମିତ ହୋଇଯାଇଛି, ଯେପରି କୈଳାସର ଦୁର୍ଦ୍ଦିନ ଲକ୍ଷକରି । କୈଳାସର ନୀଳାମ୍ବରରେ ଦୃଶ୍ୟ ହେଉନାହାନ୍ତି ସୂର୍ଯ୍ୟ, ଚନ୍ଦ୍ର କିମ୍ବା ତାରକାପୁଞ୍ଜ । ଶିଳାନ୍ତରର ନନ୍ଦୀ ଧୂଳି ଜର୍ଜ୍ଜରିତ ଶରୀରରେ ଶୟନ ରଚିଛି ଅଜିନର ପୃଷ୍ଠ ଦେଶରେ । ତାର ନେତ୍ରଦ୍ୱୟରୁ ଅବିରତ ଗଡ଼ିଚାଲିଛି ଅଶ୍ରୁଧାର । ବାଷ୍ପାକୁଳ କଣ୍ଠରୁ ତାର୍ ବେଳେ ବେଳେ ନିନାଦିତ ହେଉଛି 'ମା' 'ମା' ଧ୍ୱନି । କୈଳାସ ପୁରୀର ଉପକଣ୍ଠେ ବୃଷଭ ଶୟନ କରି ନୀରବେ ମୁଞ୍ଚୁଛି ଲୋତକ । ଶତୋଽଧିକ ମହାଜ୍ଞାନୀ ଶଙ୍କରଙ୍କ ଅବସ୍ଥା ଭସ୍ମ ବିଲେପନ ଧୂସରିତ ଶରୀର ମଳିନ ପଡ଼ିଯାଇଛି ଦୁଃଖ-ତାପରେ । ମସ୍ତକ ବେଷ୍ଟିତ ସୁନ୍ଦର ଜଟାଭାର ଅସଂସ୍କୃତ ଭାବେ ଲୋଟିପଡ଼ିଛି ସାରା ଦେହଟି ଉପରେ । ଜଟା ଶୋଭିତ ସୁ—ବର୍ଣ୍ଣ ଫଣିଗଣ ସଙ୍କୁଚିତ ଫଣାନେଇ ଲୁକ୍କାୟିତ ପ୍ରଭାତାକାଶ ଅରୁଣିମା ବର୍ଣ୍ଣିଛଟା ଜଟା ମଧ୍ୟରେ । ମଳିନ ଅର୍ଦ୍ଧଚନ୍ଦ୍ର । ମୁଦିତ ତୃତୀୟ ନେତ୍ର । ଅବଶିଷ୍ଟ ନିମୀଳିତ ନେତ୍ର ଯୁଗ୍ମ ରକ୍ତାଭ । ବାଷ୍ପାକୁଳ କଣ୍ଠୁ ନିର୍ଗତ ହେଉଛି ସକ୍ଷୀଣ ସକ୍ଷୀଣ ସ୍ୱର । କେବେକେବେ ଦୀର୍ଘଶ୍ୱାସ ସହିତ ବଂ ବଂ ଶବ୍ଦ । ନାସିକ ଶ୍ୱାସ ରନ୍ଧ୍ର ଯୁଗ୍ମ ଫୁଲି ଉଠି ଖରଶ୍ୱାସ ବହିର୍ଗତ ହେଉଛି । ଅସ୍ଥି କଙ୍କାଳ ମାନ ଅବୟବରୁ ଖସି ପଡ଼ୁଛି କେଉଁଠି । ଅଭ୍ୟାସାନୁଯାୟୀ ହସ୍ତସ୍ଥିତ ଜପାମାଳା ଏକପରେ ଏକ ଗଡ଼ିଚାଲିଛି ବେଳେ ବେଳେ ହସ୍ତ, ସ୍କନ୍ଧ ଉପରେ କଣ ଏକି ଅନ୍ୱେଷଣ କରୁଛି ।

ହଠାତ୍ ଊର୍ଦ୍ଧ୍ୱାକାଶରୁ ଭାସି ଆସିଲା ସୁ-ଲଳିତ. ବୀଣା ସ୍ୱର । ଧୀରେ ଧୀରେ ସେହି ସ୍ୱର ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠିଲା । ଝର୍ଣ୍ଣିନାଦିତ ସେ ବୀଣା ସ୍ୱର । ମନ୍ଦ ମନ୍ଦ ଗତିରେ ପବନ ଆନ୍ଦୋଳିତ ହେଲା ସେ ସ୍ୱର ବହନ କରି । ଉପକଣ୍ଠେ ଶାୟିତ ନନ୍ଦନରତ ବୃଷଭ ଚମକି ଉଠିଲା ସେ ସ୍ୱର ଶୁଣି । ମାତୃହରା ନନ୍ଦୀର କଣ୍ଠକୁହରରେ ସେ ସ୍ୱର ବାଜି ବିସ୍ମୟ ସୃଷ୍ଟିକଲା ତା ମନରେ । ଦୁଃଖ ତାପ ହରା ଶୋକ ଜର୍ଜରିତ ଶିବଙ୍କର ଅର୍ଦ୍ଧ ଚୈତନ୍ୟ ଫେରିଆସିଲା ସେ ସ୍ୱର ଶୁଣି । ସେ ବିସ୍ଫାରିତ ନୟନରେ ଲକ୍ଷ୍ୟକଲେ ଆକାଶ ମାର୍ଗକୁ । ଦେବର୍ଷି ନାରଦ ଆଗମନ କରୁଛନ୍ତି କୈଳାସ ପୁରୀକୁ । ନିମିଷକ ମଧ୍ୟରେ ନାରଦ ତାଙ୍କ ନିକଟରେ ଉପସ୍ଥିତ ହେଲେ । ନିଜ ପାଖରେ ନାରଦଙ୍କ ପାଇଁ ସ୍ଥାନ ନିରୂପଣ କରୁ କରୁ ଶିବ କହି ଉଠିଲେ, "ଦେବର୍ଷେ ! ସତୀ ଆଜି କାହିଁ ?"

'ସତୀ ଆଜି କାହିଁ ?'

ନାରଦଙ୍କ ମନରେ ବିସ୍ମୟ ସୃଷ୍ଟିକଲା ।

ତ୍ରିଜଗତ ଧାତ୍ରୀ 'ଉ—ମା' ମହେଶ୍ୱରୀ ଆଜି କାହାନ୍ତି ! ଏକା ନାରଦ କାହିଁକି ପ୍ରତ୍ୟେକଙ୍କ ମନରେ ଏହା ବିସ୍ମୟ ସୃଷ୍ଟି କରିବ ।

ହିମାଳୟର ପାଦ ଦେଶରେ ଦକ୍ଷରାଜ୍ୟ । ସୃଷ୍ଟିର ରକ୍ଷାର୍ଥେ ଦକ୍ଷ, 'ପ୍ରଜାପତି' ଆସନରେ ଅଧିଷ୍ଠିତ ହେଲେ । ତାଙ୍କ ଔରସରେ ରାଣୀ 'ପ୍ରସୂତି'ଙ୍କ ଠାରୁ ଷାଠିଏ କନ୍ୟା ଜନ୍ମଗ୍ରହଣ କରିଥିଲେ । ଏହି ଷାଠିଏ କନ୍ୟାଙ୍କ ମଧ୍ୟରୁ ତନୁ, ଭାନୁ, ମେଧା, ଶ୍ରଦ୍ଧା, ଶୃତି, ମୂର୍ତ୍ତି, ଶାନ୍ତି, ବୃଦ୍ଧା, ସୁମେଧା, ତୃଷ୍ଟାଙ୍କୁ ଧର୍ମ ଦେବତା ବିବାହ କଲେ । ଋଷି କଶ୍ୟପ ବିବାହ କଲେ ଦିତି, ଅଦିତି, କ୍ରୋଧଶା, ବିନତା, ଗନ୍ଧର୍ବୀ, ସିଂହିକା, ଯକ୍ଷା, ବଭ୍ରୁ, ଗୁହ୍ୟା, ଅରିଷ୍ଟା, ସୁରଭି, ଖଷା, କନ୍ୟକା ଆଦି ତେରହ ଭଗ୍ନୀଙ୍କୁ । ସ୍ୱୟଂ ପାଳନ କର୍ତ୍ତା ବ୍ରହ୍ମା ଦେବୀ 'ସାବିତ୍ରୀ'ଙ୍କ ରୂପ ଗୁଣରେ ମୁଗ୍ଧହୋଇ ବିବାହକଲେ । ଜଳାଧିପତି ବରୁଣ 'ମଲାବତୀ'ଙ୍କୁ ସାଦରରେ ଗ୍ରହଣ କଲେ । ଅଗ୍ନି ଦେବତା ସ୍ୱୀୟ ପତ୍ନୀରୂପେ ସ୍ୱାହା ଏବଂ ସ୍ୱଧାଙ୍କୁ ମନୋନୀତ କଲେ । ଗୁରୁ ବୃହସ୍ପତି 'ତାରା' ନାମ୍ନୀ କନ୍ୟାଙ୍କ ପାଣିଗ୍ରହଣ ପାଇଁ ଆଶାୟୀ ହେଲେ । ଧନାଧିପତି କୁବେର ବିବାହ କଲେ 'ଋଦ୍ଧି'ଙ୍କୁ । ତିମିର ନାଶକାରୀ ସୂର୍ଯ୍ୟ ଦେବତା 'ସ୍ୱପ୍ନା' ଏବଂ 'ମାୟା'ଙ୍କୁ

ପତ୍ନୀରୂପେ ବାଣ୍ଟି ଦେଲେ । ଶୀତଳ ପରଶ ଦାନକାରୀ ରୂପବାନ ଚନ୍ଦ୍ରଙ୍କୁ ଅଶ୍ୱିନୀ, ଭରଣୀ, କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା ପୂର୍ବ ଫାଲ୍‌ଗୁନୀ, ଉତ୍ତର ଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବଷାଢ଼ା, ଉତ୍ତରାଷାଢ଼ା, ପୂର୍ବଭଦ୍ରା, ଉତ୍ତରଭଦ୍ରା, ଶ୍ରବଣା, ଧନିଷ୍ଠା, ଶତଭିଷା, ରେବତୀ କନ୍ୟାମାନେ ସ୍ୱ-ଇଚ୍ଛାରେ ବରଣ କଲେ । କିନ୍ତୁ ସର୍ବ କନିଷ୍ଠ କନ୍ୟା 'ସତୀ' ତାହାଙ୍କୁ ସ୍ୱାମୀ ପଦରେ ବରଣ କରିବାକୁ ସମ୍ମତି ପ୍ରଦାନ କଲେନାହିଁ ।

ଆଜୀବନ ସନ୍ନ୍ୟାସୀବ୍ରତ ଧାରଣୀ 'ସତୀ' ଯୌବନରେ ପଦାର୍ପଣ କଲା ଉତ୍ତାରେ ପିତାଦକ୍ଷ ଏକ ସ୍ୱୟମ୍ବର ସଭା ଆହ୍ୱାନ କଲେ । ସର୍ବଲୋକର ଶ୍ରେଷ୍ଠକୃତ ପୁରୁଷ ସେହି ସ୍ୱୟମ୍ବର ସଭାରେ ଉପସ୍ଥିତ ଥିଲେ ମଧ୍ୟ 'ସତୀ' ସ୍ୱୀୟସଖି ସହିତ ପ୍ରତ୍ୟେକଙ୍କୁ ଦୃଷ୍ଟିପାତ ନ କରି ସଭାର ଶେଷ ଭାଗରେ ଦଣ୍ଡାୟମାନ ଶ୍ମଶାନାଗ୍ନି ନ-କୂଳ ଭୈରବଙ୍କ କଣ୍ଠଦେଶରେ ବିଭିନ୍ନ ରଙ୍ଗର ସୁଗନ୍ଧ ପୁଷ୍ପମାଳା ଲମ୍ବାଇ' ଦେଇ ସ୍ୱପତିଃ ରୂପେ ବରଣ କଲେ ।

ସତୀଙ୍କର ଏତାଦୃଶ କର୍ମରେ ରୁଷ୍ଟହେଲେ ପିତାଦକ୍ଷ । ହିଂସା କଲେ ଉପଗତ କନ୍ୟାପ୍ରାର୍ଥୀ କୃଷ୍ଣପୁରୁଷମାନେ । ମାତ୍ର ଦେବାଦିଦେବ ମହାଦେବଙ୍କ ବିରୁଦ୍ଧରେ କିଛି କରିବାତ ଦୂରର କଥା, ଅସମ୍ମାନ ସୂଚକ ବାକ୍ୟ ପଦଟିଏ ଉଚ୍ଚାରଣ କରିବା ସାଧ୍ୟ କାହାର ଅଛି ।

ଅବଶେଷରେ ସତୀଙ୍କୁ ସଙ୍ଗରେ ଧରି ମଙ୍ଗଳମୟ ନୀଳକଣ୍ଠ ସ୍ୱ-ଆଳୟ କୈଳାସକୁ ଗମନ କଲେ ଅନାର୍ଯ୍ୟ ଦେବତା ପନ୍ନଗଧରେ ଶିବଙ୍କୁ 'ଦକ୍ଷ' ସମର୍ଥନ କରିପାରିଲେ ନାହିଁ । ତାଙ୍କୁ ଅପମାନ ଦେବା ନିମନ୍ତେ ସେ ଏକ ଯଜ୍ଞର ଆୟୋଜନ କଲେ । ଶିବ, ସତୀଙ୍କ ବ୍ୟତୀତ ପ୍ରତ୍ୟେକ ଜାମାତା, ପ୍ରତ୍ୟେକ କନ୍ୟା ଏବଂ ପ୍ରତ୍ୟେକ ଦେବତା ଏହି ଯଜ୍ଞରେ ନିମନ୍ତ୍ରିତ ହେଲେ । ଶିବହୀନ ଏକ ଅଶୁଭ ଯଜ୍ଞ କରିବାକୁ ସ୍ୱୟଂ ବୃହସ୍ପତି 'ଦକ୍ଷ'ଙ୍କୁ ବାରଣ କଲେ ମାତ୍ର ଦକ୍ଷ ତାହାଙ୍କ ବାକ୍ୟ ଶ୍ରବଣ ନ କରି ଆଗେଇ ଗଲେ ନିଜ ଅନ୍ୟାୟ ଇଚ୍ଛା ପୂରଣରେ ।

ପିତା ଦକ୍ଷଙ୍କ ଯଜ୍ଞ ସମ୍ବାଦ ସତୀ ପ୍ରାପ୍ତହେଲେ ଲୋକ ମୁଖରୁ । ନିମନ୍ତ୍ରିତ ନ ହେଲେ ମଧ୍ୟ ସେ ଇଚ୍ଛାପ୍ରକାଶ କଲେ ଯଜ୍ଞ ଦେଖି ଯିବାକୁ । କିନ୍ତୁ ଶିବ ସମ୍ମତି ପ୍ରଦାନରେ କୁଣ୍ଠିତ ହେଲେ ଯେ ଉତ୍ତମ ରୂପେ ଜ୍ଞାତ ଥିଲେ ଯଦି ସତୀ ସେଠାକୁ ଗମନ କରନ୍ତି ତେବେ ସେ ଆଉ ପୁନର୍ବାର କୈଳାସକୁ ପ୍ରତ୍ୟାଗମନ କରିବେ ନାହିଁ । ତେଣୁ ସେ ନାସ୍ତିକଲେ ଯଜ୍ଞ ଦେଖି ଯିବାକୁ ।

ଶିବଙ୍କ ନାସ୍ତିବାଣୀ ଶ୍ରବଣ କରି ଦେବୀ 'ଉ-ମା'ଙ୍କର ହାସ୍ୟ ଉଦ୍ରେକ ହେଲା । ମହାଯୋଗୀ ସଦାଶିବ ଦେବୀ ଉ-ମାଙ୍କ ହାସ୍ୟ ଦେଖି ନିଜକୁ ଅପମାନିତ ବୋଧ କଲେ । ମାତ୍ର ସେ ଦୃଷ୍ଟିହେଲେ ଦେବୀ ସତୀଙ୍କ ଦଶବିଧ ରୂପେ ଦଶଦିଗରେ । ସର୍ବକଲ୍ୟାଣ-ମୟୀ ଉ-ମାଙ୍କ ଦଶ-ବିଧ ରୂପଦର୍ଶନ କରି ଶ୍ରେଷ୍ଠ ସାଧକ ଶିବ, ଭକ୍ତିବିଭୋର ହୋଇ ପଡ଼ିଲେ । ପଞ୍ଚମ ତାନରେ ସେ ଗାଇଉଠିଲେ ।

ଓଁ କାଳୀ, ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ,
ଭୈରବୀ, ଛିନ୍ନ, ମସ୍ତାଚ ବିଦ୍ୟା ଧୂମାବତୀ ତଥା
ବଗଳା ସିଦ୍ଧି ବିଦ୍ୟାଚ ମାତଙ୍ଗୀ କମଳାତ୍ମିକା
ଏତ ଦଶ ମହାବିଦ୍ୟା ସିଦ୍ଧବିଦ୍ୟା ନମୋ ନମଃ ।

ଜଗତ୍ଜନନୀ ମହାବିଦ୍ୟା ରୂପିଣୀ ଦେବୀ 'ସତୀ'ଙ୍କୁ ଶିବ ଆଉ ବାରଣ କରିପାରିଲେ ନାହିଁ ଯଜ୍ଞ ଦେଖି ଯିବାକୁ ।

ସ୍ୱର୍ଗର ସର୍ବଶ୍ରେଷ୍ଠ ପାରିଜାତ ପୁଷ୍ପଠୁଁ ସୁନ୍ଦର ଜବାକୁସୁମାଭରଣ ହୋଇ ଦେବୀ ପିତାଦକ୍ଷ ଗୃହକୁ ଗମନ କଲେ । ସଙ୍ଗରେ ଗଲେ ସର୍ବଂସହ ନନ୍ଦୀ ।

ଅଗଣିତ ଭୂତ, ପ୍ରେତଙ୍କର ଆନନ୍ଦ ଧ୍ୱନି ସହିତ ଶିଙ୍ଗା ଶଙ୍ଖ, ଡମ୍ବରୁ ବାଜିଉଠିଲା କୈଳାସ ପୃଷ୍ଠେ ଦେବୀ ମହାବିଦ୍ୟା ଭୁବନେଶ୍ୱରୀଙ୍କୁ ବିଦାୟ ଦେବା ପାଇଁ । ସେହି ମହାରୋଳରେ ପ୍ରକମ୍ପିତ ହୋଇଉଠିଲା ସଚରାଚର ତ୍ରିଭୁବନ । ଦକ୍ଷଯଜ୍ଞ ବିଷୟକ ଅନସୂମ ସୂଚୀ ଉପରେ ବ୍ରହ୍ମା ସ୍ୱ-ଟିପ୍ପଣୀ ବ୍ୟକ୍ତ କରୁ କରୁ ସ୍ତମ୍ଭୀଭୂତ ହେଲେ କୈଳାସର ସେହି ରୋଳ ଶ୍ରବଣ କରି । ଗୋପନରେ ଗୁରୁ ବୃହସ୍ପତିଙ୍କୁ କହିଲେ ବିଶ୍ୱର ମଙ୍ଗଳ ପାଇଁ ଗ୍ରହମାନଙ୍କ କୋପଦୃଷ୍ଟି ଖଣ୍ଡନ ନିମିତ୍ତ ହେଇ ଦେଖ

ଦେଖା ଉ-ମା ଦକ୍ଷଯଜ୍ଞ କ୍ଷେତ୍ରକୁ ଗମନ କରୁଛନ୍ତି । ଜବାକୁସୁମାଭରଣା 'ମା'ର ସେହି ଅଚଳରୂପ, ପାଳନକର୍ତ୍ତା ବ୍ରହ୍ମା ଏବଂ ଗୁରୁ ବୃହସ୍ପତି ଦର୍ଶନ କଲେ ବହୁ ଦୂରରୁ, ସ୍ୱର୍ଗପୁରଠାରୁ ।

ପ୍ରଜାପତି ଦକ୍ଷ ଗୃହିଣୀ ନୃଦେବୀ 'ପ୍ରସୂତି' କନିଷ୍ଠ କନ୍ୟା ସତୀଙ୍କ ନିମନ୍ତେ ବ୍ୟଥିତ ଥିଲେ । ମାତ୍ର ଉଦୟକାଳୀନ ସୂର୍ଯ୍ୟସଦୃଶ ଜବାଭରଣ ସର୍ବସୌନ୍ଦର୍ଯ୍ୟର ଆଧାର ଦେବୀ 'ସତୀ'ଙ୍କ ଆଗମନ ଦେଖି ପ୍ରୀତ ହେଲେ । କିନ୍ତୁ ପିତା 'ଦକ୍ଷ' ଅସଭ୍ୟ ବର୍ବରଙ୍କ ଭଳି ସତୀଙ୍କ ପ୍ରତି ଦୁର୍ବ୍ୟବହାର ପ୍ରଦର୍ଶନ କଲେ । ଅନ୍ୟାନ୍ୟ ଭଗ୍ନୀମାନେ ମଧ୍ୟ ସତୀଙ୍କୁ ନାନାପ୍ରକାର ସମାଲୋଚନା କଲେ । 'ସତୀ' ସମସ୍ତ ଅମ୍ଳାନ ବଦନରେ ସହ୍ୟ କଲେ ।

ଅନ୍ୟାନ୍ୟ ଭଗ୍ନୀମାନଙ୍କ ସହିତ ଯଜ୍ଞ ଦର୍ଶନ କରିବାକୁ ଯାଇ ସେ ଦେଖିବାକୁ ପାଇଲେ, ସମସ୍ତ ଦେବତାଙ୍କ ନିମିତ୍ତ ଯଜ୍ଞ ମଣ୍ଡପରେ ସ୍ଥାନ ନିରୂପଣ ହୋଇଛି ମାତ୍ର ମଙ୍ଗଳମୟ ମହେଶ୍ୱରଙ୍କ ପାଇଁ କୌଣସି ସ୍ଥାନ ନିରୂପିତ ହୋଇନାହିଁ । ସେ ପ୍ରତିବାଦ କଲେ ଏହି ହେନସ୍ଥା ପାଇଁ ଶିବହୀନ ଯଜ୍ଞ ନିଷ୍ଫଳ ଯଜ୍ଞ ବୋଲି ସେ ବ୍ୟକ୍ତ କରନ୍ତେ ପ୍ରତ୍ୟେକଙ୍କ ସମ୍ମୁଖରେ ପିତା ଦକ୍ଷ ଶିବଙ୍କୁ ଅସଭ୍ୟ, ହୀନ ଆଦି ବାକ୍ୟ ପ୍ରୟୋଗ କରିବାରୁ ସତୀ ପତି ନିନ୍ଦା ସହ୍ୟକରି ପାରିଲେ ନାହିଁ । ସେ କିଏ ଏବଂ ତାଙ୍କ ଦ୍ୱାରା କଣ ହୋଇପାରେ ସେ କଥା ସେ ପୂରା ଦୂର ଭୁଲିଗଲେ । ସାଧାରଣ ସ୍ତ୍ରୀ ଲୋକଙ୍କ ଭଳି ସେ ପିତାଙ୍କ ଘୃତା ହୁତି ପ୍ରାପ୍ତ ଲେଲିହମାନ ଅଗ୍ନିଶିଖା ଯଜ୍ଞକୁଣ୍ଡକୁ ଝାମ୍ପ ପ୍ରଦାନ କଲେ ।

ଚମକି ଉଠିଲେ ଦେବଗଣ । ଚମକି ଉଠିଲେ ଶ୍ମଶ୍ରୁ ବଧାରୀ ଭୃଗୁ ।

ଅମଙ୍ଗଳ ଆଶଙ୍କାରେ ଆମନ୍ତ୍ରିତ ଋଷିବୃନ୍ଦ ପଳାୟନ କଲେ ନିବିଡ଼ ଅରଣ୍ୟ ମଧ୍ୟକୁ । ସତୀଙ୍କ ଅଙ୍ଗ ସ୍ପର୍ଶରେ ନିର୍ବାପିତ ହେଲା ଅଗ୍ନି । ମଙ୍ଗଳମୟୀର ଶରୀର ଦଗ୍ଧ କରିବା ତା ଶକ୍ତିର ବାହାରେ । ବରଂ ସେ ଉଦ୍ଭ୍ରାନ୍ତା ବଦନରେ ଶୀତଳ ପରଶ ଦାନ କରି ସତୀଙ୍କୁ ସ୍ୱ ବକ୍ଷରେ ଧାରଣ କଲା । କିନ୍ତୁ ସମସ୍ତଙ୍କ ଅଗୋଚରରେ ସତୀଙ୍କ ଜୀବାତ୍ମା ଘଟ ତ୍ୟାଗକରି ଚାଲିଗଲା ।

ଏତାଦୃଶ ଅଘଟଣ ଦର୍ଶନ କରି ନନ୍ଦୀ କ୍ଷୁଦ୍ର ଶିଶୁଙ୍କ ଭଳି କ୍ରନ୍ଦନ କରି କରି ଛୁଟିଗଲା କୈଳାସାଭିମୁଖେ ପିତା ଶିବଙ୍କୁ ସମ୍ବାଦ ଦେବାକୁ ।

ମହାଯୋଗୀ ଶିବ, ଯୋଗରେ ସତୀଙ୍କ ବିୟୋଗ ସମ୍ବାଦ ଜ୍ଞାତ ହେଲେ ମଧ୍ୟ ନନ୍ଦୀ ଆସିବା ପର୍ଯ୍ୟନ୍ତ ନିଜକୁ କୌଣସି ମତେ ସମ୍ବରଣ କରି ରଖିଲେ । ଯଥା ସମୟରେ ନନ୍ଦୀ ଠାରୁ ଘଟଣା ଶ୍ରବଣ କରି ଧୂର୍ଜଟିଙ୍କର ମୁଦ୍ରିତ ତୃତୀୟ ନେତ୍ର ସହସା ବିସ୍ଫାରିତ ହୋଇଗଲା । ଅଗ୍ନି ବର୍ଷୀ ତୃତୀୟ ନେତ୍ର ମଧ୍ୟରୁ ଅମାପ ଧୂମ କୁଣ୍ଡଳୀ ଆକାରରେ ସାରା ବିଶ୍ୱ ପରି ବ୍ୟାପ୍ତହେଲା ଭୟରେ ଅମରଗଣ ବିଷ୍ଣୁଙ୍କ ଆଶ୍ରୟ ନେଲେ । ସର୍ବ ନିୟନ୍ତ୍ରଣକାରୀ ବିଷ୍ଣୁ ବିରାଟ ଧୂମ କୁଣ୍ଡଳୀ ଦର୍ଶନ କରି ସ୍ତବ୍ଧ ହୋଇଗଲେ କିଛି ସମୟ ପାଇଁ । ଦେଖୁ ଦେଖୁ ସେହି କୁଣ୍ଡଳୀ ଏକ ତ୍ରିତ ହୋଇ ଏକ ଭୈରବ ରୂପ ଧାରଣ କଲା । ରୁଦ୍ରରୂପୀ ଶେଷ ଦେବଙ୍କ ନିର୍ଦ୍ଦେଶରେ ସେ ଦ୍ରୁତ ଗତିରେ ଛୁଟି ଚାଲିଲା ଦକ୍ଷରାଜ୍ୟ ଆଡ଼କୁ । ସେହି ଭୟଙ୍କର ରୂପ ପ୍ରଦର୍ଶନ କରି ଦେବତାମାନେ ଭୟରେ ଚକ୍ଷୁ ବନ୍ଦ କଲେ । ତାର ଦ୍ରୁତ ଚଞ୍ଚଳ ଗତିରେ ବିରାଟ ବିରାଟ ନଗମାନ ଭାଙ୍ଗି ଚୂରମାର ହୋଇଗଲା । ଅଗ୍ନିବର୍ଷୀ ଚକ୍ଷୁ ସ୍ଫୁଲିଙ୍ଗରେ ଦଗ୍‌ଧୀଭୂତ ହେଲା ଦକ୍ଷରାଜ୍ୟର ସୁଶ୍ୟାମଳ ଭୂଖଣ୍ଡ । କଳ-ନାଦିନୀ ସ୍ରୋତସ୍ୱିନୀ ଶୁଷ୍କ ହେଲା ରୁଦ୍ର ରୂପ ଦର୍ଶନ କରି । ତାର ରୋଷ କଷାୟିତ ପୂର୍ଣ୍ଣ ନେତ୍ରରେ ଦକ୍ଷରାଜ୍ୟର ସକଳ ଐଶ୍ୱର୍ଯ୍ୟ ଧୂଳି ସାତ୍ ହୋଇଗଲା । ଅହଂକାରୀ ଦକ୍ଷ ତାର ସମସ୍ତ ଶକ୍ତି ବିସ୍ତାରି କରି ସେହି ଭୀମ ରୂପର ଗତିରୋଧ କରିବା ପାଇଁ ଦଣ୍ଡାୟମାନ ହେଲା । ଯାହାର ସାମାନ୍ୟ କଟାକ୍ଷ ପାତରେ ସଚରାଚର ପୃଥିବୀ ଧ୍ୱଂସ ସ୍ତୂପରେ ପରିଣତ ହୋଇ ପାରେ ତାର ଗତିରୋଧ କରିବ ଶକ୍ତି କାହାର ବା ଅଛି ? ଦକ୍ଷତ କ୍ଷୁଦ୍ର ମୃତ୍ତିକା ପିତୁଳି ସମ ! ଦକ୍ଷର ଦୁଃସାହସ ଦର୍ଶନ କରି ସେ ଭୀମ ମୂର୍ତ୍ତି ଘୋର ଅଟ୍ଟହାସ୍ୟ ଦ୍ୱାରା ଦକ୍ଷର ସମସ୍ତ ଶକ୍ତିକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲା । ଯାହାର ସାମାନ୍ୟ ଅଟ୍ଟହାସ୍ୟରେ ଗ୍ରହ ଉପଗ୍ରହ ମାନେ କକ୍ଷଚ୍ୟୁତ ହୁଅନ୍ତି ତା' ସପକ୍ଷରେ ଦକ୍ଷର ବା କେତେ ଶକ୍ତି ? ସେହି ଉଗ୍ରମୂର୍ତ୍ତି ନିମିଷ ମାତ୍ରକେ ଛୁଟି ଆସି ଦକ୍ଷର ମୁଣ୍ଡ ମୋଡ଼ି ଗଣ୍ଡିଠାରୁ ପୃଥକ କରିନେଲା ।

ତତ୍ପରେ, ରୁଷ୍ଟ ଶିବ ଶୂଳହସ୍ତେ ପ୍ରବେଶ କଲେ ଦକ୍ଷ ପୁରୀରେ । ଉଲଗ୍ନରୂପ ସେହି ଭୟଙ୍କର ଶୂଳପାଣି ଜାମାତାଙ୍କୁ ଦକ୍ଷରାଣୀ 'ପ୍ରସୂତି' ସୁବର୍ଣ୍ଣ ଥାଳୀରେ ଧୂପ ଦୀପାଦି ଧରି ଅଭ୍ୟର୍ଥନା ପାଇଁ ଉପସ୍ଥିତ ହେଲେ । ପତି, କନ୍ୟା ହରା ଶୋକ ଜର୍ଜରିତା ଦକ୍ଷରାଣୀଙ୍କ ବିରୂପ ଦର୍ଶନ କରି ଶଙ୍କରଙ୍କ କ୍ରୁଦ୍ଧ ମନ କିୟତ୍ ପରିମାଣରେ ଶାନ୍ତ ହେଲା । 'ପ୍ରସୂତି'ଙ୍କ କାତର ପ୍ରାର୍ଥନା କ୍ରମେ ଶିବ ଦକ୍ଷଙ୍କ ଗଣ୍ଡିରେ ଛାଗଳ ମସ୍ତକ ସ୍ଥାପନା କରି ଜୀବନ୍ୟାସ ଦେଲେ । ଦକ୍ଷ ଦେବାଦି ଦେବ ମହାଦେବଙ୍କ ପ୍ରତି କରିଥିବା ଅନ୍ୟାୟ ପାଇଁ ଅନୁତାପ କଲେ ।

ସତୀଙ୍କ ବିୟୋଗ ଦୁଃଖରେ ଦଗ୍ଧୀଭୂତ ସକଳ ହର 'ହର' ଅଗ୍ନିକୁଣ୍ଡର ଶୀତଳ ତାପରୁ ସତୀଙ୍କ ମୃତ ଦେହ ସ୍କନ୍ଧ ଦେଶରେ ବହନ କରି ପାଗଳଙ୍କ ପରି ଘୂରି ବୁଲିଲେ ସାରା ବିଶ୍ୱ ପରିଭ୍ରମଣ କରି ।

ଜ୍ଞାନ ଏବଂ ପ୍ରଜ୍ଞା ଶିବ ନାମରେ ଅଭିହିତ ହୋଇଛି । ପ୍ରତ୍ୟେକ ଜୀବର ଚୈତନ୍ୟ ମଧ୍ୟରେ ଯେଉଁ ବିଶୁଦ୍ଧ ଚୈତନ୍ୟ ସ୍ଥିତ ଅଛି ତାହାକୁ ଅବଲମ୍ବନ କରି ଅନନ୍ତ ଜୀବ-ଚେତନା ଅନନ୍ତ ଭାବେ ଲୀଳାୟିତ ହୁଏ । ସେଇ ଶୁଦ୍ଧ ଚିନ୍ମୟ ଚେତନାକୁ ଜ୍ଞାନ ବା ଶିବ କୁହାଯାଏ । ସିଏ ସତ୍ୟମ୍, ଶିବମ୍, ସୁନ୍ଦରମ୍, ସେହିଁ ବ୍ରହ୍ମର, ସେ ହିଁ ବିଶୁଦ୍ଧ ଆତ୍ମା ସତ୍ୟ, ଜ୍ଞାନ, ଅମୃତ, ଆନନ୍ଦ, ଶିବଙ୍କର ହିଁ ଅନ୍ୟନାମ । ମନଠାରୁ ସବୁ ସୃଷ୍ଟି ହୁଏ— ତାହାହିଁ ମନ ବ୍ରହ୍ମା, ପ୍ରାଣଠାରୁ ସ୍ଥିତିବା ଭୋଗ ସୃଷ୍ଟି ହୁଏ—ସେହିଁ ପ୍ରାଣ ବିଷ୍ଣୁ; ଜ୍ଞାନଠାରୁ ତ୍ୟାଗ ବା ବିଲୟ ହୁଏ—ତାକୁ ହିଁ ଜ୍ଞାନ ଶିବ କୁହାଯାଏ । ସମସ୍ତ ବସ୍ତୁର ପରିସମାପ୍ତି ଘଟେ ଜ୍ଞାନରେ 'ଜ୍ଞାନେ ପରି ସମାପ୍ୟତେ' । ଜଗତ ଧ୍ୱଂସ ଶୀଳ ବା ଚିରସ୍ଥାୟୀ, ସତ୍ୟ କିମ୍ବା ମିଥ୍ୟା ତାହା ଏକମାତ୍ର ଜ୍ଞାନୀ ବ୍ୟକ୍ତିକୁ ଜ୍ଞାତ ହୋଇ ପାରେ । ସତ୍ୟ କେବେ ବିଲୁପ୍ତ ହୁଏ ନାହିଁ କିମ୍ବା ଅସତ୍ୟର କୌଣସି ସ୍ଥିତି ରହିନାହିଁ କିମ୍ବା ରହିବନାହିଁ । ଯେଉଁମାନେ ଜ୍ଞାନୀ ବ୍ୟକ୍ତି ସେମାନେ ମିଥ୍ୟାର ଭୟାନକ ପରିଣାମ ହୃଦୟଙ୍ଗମ କରି ପାରନ୍ତି ଏବଂ ସତ୍ ସ୍ୱରୂପ ସତ୍ତ୍ୱକୁ ହୃଦୟରେ ଅନୁଭବ କରି ପାରନ୍ତି । ଅଣୁଠାରୁ ମହତମାଣୁ ପର୍ଯ୍ୟନ୍ତ ପ୍ରତ୍ୟେକରେ ଯେଉଁ ସତ୍ର ସତ୍ତା ପ୍ରଚ୍ଛନ୍ନ ଭାବେ ସ୍ଥିତ, ଯାହାର ବିନାଶ କେବେ ହୋଇନାହିଁ କିମ୍ବା ହେବନାହିଁ ଯେ ପ୍ରତ୍ୟେକର ସ୍ଥିତି ଏବଂ ଲୟର କର୍ତ୍ତା, ବେଦାଦି ଶାସ୍ତ୍ରମାନଙ୍କରେ ଯେ ବ୍ରହ୍ମ ବୋଲି ଲିଖିତ ସେହି 'ବ୍ରହ୍ମ' ମଧ୍ୟ

'ଅମ୍ବା' ଏବଂ ସେହି ମଧ୍ୟ 'ଶିବ' ଙ୍କଠାରୁ ଶକ୍ତିଶୂନ୍ୟ ହେଲେ ସେ ଶିବ ନ ହୋଇ ଶବ ନାମରେ ଅଭିହିତ ହେବେ । ତେଣୁ ଶବ ଶକ୍ତି ଯୁକ୍ତ ହେଲେ ସେ ଶିବ ବା ପରମ ତତ୍ତ୍ୱ ବା ସତ୍ୟ ଭାବେ ଗୃହୀତ ହୋଇଥାନ୍ତି । ବିନା ଶକ୍ତିରେ ବ୍ରହ୍ମ ଶୂନ୍ୟ— । ଅରୂପ ଅନନ୍ୟ ବ୍ରହ୍ମ ଶକ୍ତିଙ୍କ ଦ୍ୱାରା ଜ୍ଞାତ । ତେଣୁ ଶକ୍ତି ହିଁ ମୂଳ । ଆଦ୍ୟର ଅର୍ଦ୍ଧ ନେତ୍ରରେ ଲକ୍ଷ୍ୟକଲେ ଶିବ ଶକ୍ତି ଦୁହେଁ ଏକ ଓ ଅଭେଦ । ତେଣୁ ଦୁହେଁ ସତ୍ୟ । ବରଂ ଶକ୍ତିହୀନ ଶିବ ଅଳୀକ ଭଳି ପ୍ରତୀୟମାନ ହୁଅନ୍ତି । ଶକ୍ତି ଶିବଙ୍କୁ ଛାଡ଼ି ରହିପାରନ୍ତି ନାହିଁ କିମ୍ବା ଶିବ ଶକ୍ତିଙ୍କୁ ଛାଡ଼ି ଶିବବାଚ୍ୟ ହୁଅନ୍ତି ନାହିଁ ।

ଏହିଭଳି ଭାବେ ବିଭିନ୍ନ ଭକ୍ତ ଦ୍ୱାରା ସତ୍ୟର ବ୍ୟାଖ୍ୟା ସାଧାରଣତଃ ହୁଏ । ଏହି ସତ୍ୟ ହିଁ ଅମୃତ, ଅଭୟ ଏବଂ ଆନନ୍ଦ । ସତ୍ୟ ନିଷ୍ଠ ବ୍ୟକ୍ତିଗଣ ସଦା ସୁଖରେ କାଳାତିପାତ କରନ୍ତି ସେମାନେ ଅନୁଭବ କରନ୍ତି ମୃତ୍ୟୁ ବୋଲି କିଛି ନାହିଁ, ଭୟ ବୋଲି କିଛି ନାହିଁ । ତେଣୁ ସେ ନିର୍ଭୟ ଏବଂ ଅପରାଜେୟ ।

ଦକ୍ଷ ଏହିଭଳି ସତ୍ୟ କେବେ ବୁଝିବାକୁ ଚେଷ୍ଟା କରି ନାହିଁ କିମ୍ବା ଅନୁଭବ କରିବାକୁ ସମର୍ଥ ହୋଇ ନାହିଁ । ତେଣୁ ସେ ଶିବଙ୍କର ବାସ୍ତବତାକୁ ସ୍ୱୀକାର କରେନା । ସେ ବସ୍ତୁ ବାଦଥିବାରୁ ସ୍ଥୂଳଜଗତକୁ ସତ୍ୟ ବୋଲି ଧାରଣା କରେ ଏବଂ ବାହ୍ୟ ବସ୍ତୁକୁ ଜୀବନର କାମ୍ୟ ବସ୍ତୁ ବୋଲି ମନେ କରେ । ତେଣୁ ବାସ୍ତବ ସତ୍ୟ ନିକଟରେ ତାର ପରାଜୟ ଅନିବାର୍ଯ୍ୟ । ଶିବ-ବା ସତ୍ୟ, ଜ୍ଞାନ, ଅମୃତ ନିତ୍ୟପୁରୁଷ ନିତସ୍ୱୀ । ତନ୍ତ୍ରସାଧକ ଏହି ଜ୍ଞାନ, ଅମୃତା ସ୍ପୃହାରେ ବସି ତନ୍ତ୍ରସାଧନା କରିଥାଏ । ସ୍ମୃତିରେ ଅଛି ବୃକ୍ଷର ଉପର ଶାଖାରେ ଏକ ପକ୍ଷୀ ଅଭୁକ୍ତ ଭାବେ ଥାଏ ଏବଂ ନିମ୍ନ ଶାଖାରେ ଆଉ ଏକ ପକ୍ଷୀ ମିଷ୍ଟ ଫଳାହାର କରେ । ଯେତେବେଳେ ନିମ୍ନଶାଖା ପକ୍ଷୀ ତିକ୍ତଫଳ ଖାଏ ସେତେବେଳେ ସେ ଉଚ୍ଚ ଶାଖାକୁ ଚାଲିଯିବାକୁ ଚାହେଁ । ଶେଷରେ ମଧ୍ୟ ସେ ଉଚ୍ଚଶାଖାକୁ ଚାଲିଯାଏ ଓ ଅନୁଭବ କରେ ଉଚ୍ଚଶାଖା ପକ୍ଷୀ ହିଁ ସେ ନିଜେ । ନିମ୍ନ ଶାଖାରେ ତାହାର ଛାୟାମାତ୍ର ପକ୍ଷୀ ଭଳି ଅବସ୍ଥାନ କରିଥିଲା ।

ଦକ୍ଷର ମୋହ ଭାଙ୍ଗିବାକୁ ସେହି ଜ୍ଞାନ ଜନ୍ମନେଲେ 'ସତୀ' ରୂପରେ ଦକ୍ଷ ଗୃହିଣୀ ଗର୍ଭରେ ଦକ୍ଷ ଔରସରୁ ଶିବସାଧକ ମାତ୍ର । ମହାମାୟା ସାଧନରେ ସେ ସଦାବ୍ୟାପୃତ ରହି ପଦବାଚ୍ୟ ହୋଇଛନ୍ତି ।

ମହାମାୟାଙ୍କୁ ଲାଭ କରିବା ତାଙ୍କ ପକ୍ଷରେ ହିଁ ସମ୍ଭବ । ସେ ହିଁ ଉପଯୁକ୍ତ ପାତ୍ର ପଞ୍ଚମକାର ପୂଜାର । ପ୍ରସ୍ଥା ହିଁ ତାନ୍ତ୍ରିକର ତନ୍ତ୍ର ଚକ୍ର । ତନ୍ତ୍ର ଚକ୍ର ଉପରେ ଉପବେସନ କରି ସେ ଶୀଘ୍ର 'ମା'ର ସାକ୍ଷାତ ଲାଭ କରିଥାଏ । ଶିବାଙ୍କ କଲ୍ୟାଣରେ, ସମ୍ପର୍ଶରେ ଶବ ହୁଏ ଶିବ । ତେଣୁ ତନ୍ତ୍ରରେ ଶିବ ଦ୍ରଷ୍ଟା ଶକ୍ତି ମୂଳତତ୍ତ୍ୱ ।

ଦକ୍ଷର ସାତନ୍ତ୍ର୍ୟକ ଅର୍ଥ ବିଚକ୍ଷଣ । ସଂସାର କ୍ଷେତ୍ରରେ ବା ରାଷ୍ଟ୍ରରେ ଅଥବା ସମାଜରେ ବହୁ ବିଚକ୍ଷଣ ବ୍ୟକ୍ତି ଦୃଷ୍ଟ ହୁଅନ୍ତି । ସେମାନେ ତାଙ୍କର ଅସୀମ ପାଣ୍ଡିତ୍ୟ, ବାଗ୍ମିତା, ବୁଦ୍ଧି ଓ କାର୍ଯ୍ୟଦକ୍ଷତା ଦ୍ୱାରା ଜଗତକୁ ଚମତ୍କୃତ କରନ୍ତି । ମାତ୍ର ଏ ସମସ୍ତ ସତ୍ତ୍ୱେ ସେମାନେ ନାସ୍ତିକ ବାଦର ଆଶ୍ରୟ ନିଅନ୍ତି । ଏହିଭଳି ଲୋକଙ୍କୁ ଦକ୍ଷ ଓ ଅସୁରବୁଦ୍ଧି ଭାବେ ପୁରାଣକାରମାନେ ବ୍ୟକ୍ତ କରିଛନ୍ତି । ଏହି ବ୍ୟକ୍ତିମାନେ ବିଚକ୍ଷଣତାର ସହିତ ଦେଶ ତଥା ସମାଜକୁ ଏପରି ଭାବେ ନିୟନ୍ତ୍ରଣ କରନ୍ତି ଯଦ୍ୱାରା ବାସ୍ତବ ନୀତି, ନିୟମ ବିପର୍ଯ୍ୟସ୍ତ ଲଭେ । ବସ୍ତୁବାଦର ପ୍ରଭାବରେ ଆଧ୍ୟାତ୍ମିକ ବାଦଉପରୁ ମାନବର ଦୃଷ୍ଟିକୋଣ ଫେରିଆସେ । ଏହି ଗୋଷ୍ଠିରେ ରାବଣ, ମହିଷାସୁର ଆଦିଙ୍କୁ ଗ୍ରହଣ କରାଯାଇପାରେ । ପୁରାଣ ପୃଷ୍ଠାଙ୍କରୁ ଦୃଷ୍ଟହୁଏ ଏକଦା ମହିଷାସୁର ମଧ୍ୟ ପ୍ରଜାପତି ଆସନରେ ଅଧିଷ୍ଠିତ ହୋଇଥିଲେ । ଏହି ଦକ୍ଷବ୍ୟକ୍ତି ସ୍ୱତଃ ବସ୍ତୁବାଦୀ ଥିବାରୁ ବିଭିନ୍ନ ଯନ୍ତ୍ର ସୃଷ୍ଟିକରି ନିଜର ପ୍ରଭୁତ୍ୱ କ୍ଷମତା ବିସ୍ତାର କରିବାକୁ ଆଗଭର ହୁଅନ୍ତି । ଫଳତଃ ସେମାନେ ସ୍ୱାର୍ଥାନ୍ଧ ହୋଇ ଏପରି ଅବିଚାର କରିଯାନ୍ତି ଯଦ୍ୱାରା ସେ ଦେଶ ତାଙ୍କୁ ହୃଦୟବିହୀନ ବା ଅମଣିଷ ବୋଲି ଧାରଣା କରନ୍ତି । ଗଠନ ନାମରେ ଏମାନେ ଆଗେଇଯାନ୍ତି ଧ୍ୱଂସମୂଳକ କାର୍ଯ୍ୟରେ । ବିଜ୍ଞାନର ଅଗ୍ରଗତି କରୁ କରୁ ସେମାନେ ଖୋଳନ୍ତି ଲୋକ-ଜଗତର ମରଣ-କୂପ ! ସୃଷ୍ଟିହୁଏ ପରମାଣୁ ଅସ୍ତ୍ର । କିନ୍ତୁ ବାସ୍ତବ ସତ୍ୟ ପାଖରେ ସେମାନେ ହାରମାନିବାକୁ ବାଧ୍ୟ ହୁଅନ୍ତି । ପରମାଣୁଠାରୁ ମହାପରମାଣୁ ମଧ୍ୟ ନିଷ୍କ୍ରିୟ ହୋଇପଡ଼େ ସତ୍ୟଶିବ ସୁନ୍ଦର ନିକଟରେ ।

ସେହି ଶିବ ଯେଉଁ ସତ, ଚିତ, ଆନନ୍ଦର ଅଂଶ ବିଶେଷ ତାହା ଯେତେ ଅଳ୍ପ ସମୟ ହେଉନା କାହିଁକି ମାୟାର କୁହଝଟିକା ମଧ୍ୟରେ ସେ ମଧ୍ୟ ପାଗଳଙ୍କ ପରି ଘୁରି ବୁଲିଲେ ସତୀଙ୍କ ମାୟା ଶରୀର ବହନ କରି

ମଙ୍ଗଳମୟଙ୍କର ଏପରି ଦୁରବସ୍ଥାରେ ନିସ୍ତବ୍ଧ ହୋଇପଡ଼ିଲେ ସତ୍ୟ, ଜ୍ଞାନ, ଅମୃତାଦି । ବିପର୍ଯ୍ୟସ୍ତ ହେଲା ଗତି ନିୟମ । ସୃଷ୍ଟିର ରକ୍ଷାର୍ଥେ ଭଗବାନ ବିଷ୍ଣୁ ମହେଶ୍ୱରଙ୍କ ଅଗୋଚରରେ କାଳଚକ୍ର ଦ୍ୱାରା ସତୀଙ୍କ ଶରୀର ମହାଦେବଙ୍କ ସ୍କନ୍ଧ ଦେଶରୁ ଧିରେ ଧିରେ ଅପସାରଣ କରିବାକୁ ଲାଗିଲେ । ଅବଶେଷରେ ଶିବଙ୍କ ସ୍କନ୍ଧଦେଶ ଶୂନ୍ୟ ହୋଇଗଲା । ତଥାପି ମଧ୍ୟ ସେ ଅନୁଭବ କରିପାରିଲେ ନାହିଁ ସତୀଙ୍କ ଶରୀର ତାଙ୍କ ସ୍କନ୍ଧଦେଶରେ ଅଛି କି ନାହିଁ ବୋଲି । ସେ ପୂର୍ବଭଳି ମହାଭୈରବ ମୂର୍ତ୍ତି ଧାରଣ କରି ବିଶ୍ୱପରିଭ୍ରମଣ କରୁ କରୁ ହିମାଳୟର ଉତ୍ତୁଙ୍ଗ ଶିଖର କୈଳାସ ଦୃଷ୍ଟିପଥାରୂଢ଼ ହେଲା । ଫେରିଆସିଲା ତାଙ୍କର କିୟତକ ପରିମାଣରେ ଚେତନା । ସେ ହଠାତ୍ ସ୍ୱସ୍କନ୍ଧ ଅବଲୋକନ କରି ମ୍ରିୟମାଣ ହୋଇପଡ଼ିଲେ । ଭୁଲିଗଲେ ନିଜେ ନିଜକୁ । ଅତି ଦୁଃଖରେ କୈଳାସ ପୁରୀକୁ ପ୍ରତ୍ୟାବର୍ତ୍ତନ ନକରି ଅବସ୍ଥାନ କଲେ ସ୍ୱ-ସାଧନା ପୀଠରେ ।

ନାରଦ କହିଲେ ପ୍ରଭୋ ! ଜଗଜ୍ଜନନୀ ଶିବା ଆଜି ନାହାନ୍ତି ? ବ୍ରହ୍ମଦର୍ଶୀ ଶିବଙ୍କର ମୋହ ଧିରେ ଧିରେ ଅପସରି ଯାଉଥାଏ ନାରଦଙ୍କ ବୀଣା ଝଙ୍କାରରେ ଏବଂ ସଂସ୍ପର୍ଶରେ । ତାଙ୍କ ମଳିନ ପାଣ୍ଡୁର ମୁଖମଣ୍ଡଳ ଧୀରେ ଧୀରେ ସତେଜ ହୋଇଆସୁଥାଏ । ଆତ୍ମବାଦର ନିଗୂଢ଼ ତତ୍ତ୍ୱ ସତୀଙ୍କ ବିୟୋଗ-ଦୁଃଖକୁ ଅନେକ ପରିମାଣରେ ଲାଘବ କଲା । ସେ ନାରଦଙ୍କୁ କୌଣସି ଉତ୍ତର ନ ଦେଇ ସ୍ନାନାର୍ଥେ ଗଙ୍ଗା ମଧ୍ୟରେ ପ୍ରବେଶ କଲେ ।

ପବିତ୍ର ଜାହ୍ନବୀ ଜଳରେ ଅବଗାହନ କଲେ ଶିବ । ଜାହ୍ନବୀର ଖରସ୍ରୋତ ଧୌତ କଲା ଶିବଙ୍କ ଦେହ, ମନର ଅବଶତା । ସେ ପ୍ରାୟପୂରି ଭୁଲିଗଲେ ସତୀ ବିଚ୍ଛେଦ ଦୁଃଖ । ସେ ଅନୁଭବ କଲେ ସେହି ଆଦି ପ୍ରଣବା ଏବଂ ସତୀଙ୍କ ମଧ୍ୟରେ କୌଣସି ବିଭେଦ ନାହିଁ । ଓଁକାର ରୂପେ ଯେ ସଚରାଚରର ପରିବ୍ୟାପ୍ତ ଯେ "ନଚ ପୁରୁଷ ନଚ ସ୍ତ୍ରୀ" ସେ ହିଁ ସତୀ ରୂପେ ଆସିଥିଲା ତାଙ୍କ ପାଖକୁ । ତା' କାର୍ଯ୍ୟ ସେ ସମାପନ କରି ମିଶିଗଲା ସେହି ଆଦି ପ୍ରଣବ ଓଁକାର ମଧ୍ୟରେ ।

ନିଖିଳ ଜଗତର ମୂଳାଧାର ଶିବ ସ୍ନାନ ସମାପନ କଲେ ବିଧିମତେ । ନାରଦ ଯୁକ୍ତକର ହୋଇ ଦଣ୍ଡାୟମାନ ହେଲେ ତାଙ୍କ

ସମ୍ମୁଖରେ । ଉଦ୍ଭାସିତ ବଦନରେ ଶିବ ବ୍ୟକ୍ତ କଲେ, ସାଧାରଣ ସଂସାରୀଙ୍କ ଭଳି ମୁଁ ଜ୍ଞାନହୀନ, ମାୟାଗ୍ରସ୍ତ ହୋଇଥିଲି ନାରଦ ! ତୁମର ସେହି ବୀଣାର ଝଙ୍କାର ଏବଂ ତୁମସଙ୍ଗ ମୋତେ ଫେରାଇଆଣିଲା ମୋ ଭିତରକୁ । ମୁଁ ମୋର ଶିବତ୍ୱପ୍ରାପ୍ତ ହୋଇ ଶୁଦ୍ଧ ହେଲି । ତାର କଣ୍ଠସ୍ୱର ତୁମ ବୀଣା ଝଙ୍କାରରେ ଏପରି ପ୍ରତ୍ୟେକ ଶବ୍ଦରେ । ମୁଁ ଦୃଷ୍ଟହେଲି ତାର ସେହି ଅପରୂପ କାନ୍ତି ଏବଂ ବଦନମଣ୍ଡଳ ସର୍ବଘଟରେ ଅକ୍ଷପୃଷ୍ଠରେ । ସେ ଆତ୍ମା ରୂପରେ ଅବସ୍ଥାନ କରୁଛି, ମାୟା ରୂପରେ ପ୍ରତ୍ୟେକଙ୍କୁ ଆବଦ୍ଧ କରି ରଖିଛି । ସେ ପୁଣି ସବି ରୂପରେ ଜୀବଜଗତକୁ ଦୃଷ୍ଟ ହେଉଛି । ତାର ସୁକୋମଳ କୋଳରେ ଚେତନପ୍ରାଣୀ ନିଶ୍ଚିନ୍ତରେ ଶୟନ କରୁଛନ୍ତି । ପ୍ରାତଃ ସମୟରେ ସେ କୁମାରୀ ରୂପେ ଦେଖାଦେଉଛି, ମଧ୍ୟାହ୍ନ କାଳରେ ପ୍ରୌଢ଼ା ରୂପେ, ସନ୍ଧ୍ୟାରେ ବୃଦ୍ଧା ରୂପେ ଏବଂ ସବିରେ ସ୍ୱରୁନେହା ଭାବେ ସେ ହିଁ ଦୃଷ୍ଟ ହେଉଛି । ତାପାଇଁ ବ୍ୟସ୍ତ ହେବା ବାସ୍ତବିକ ମୋର ମୂର୍ଖତାର ପରିଚୟସୂଚକ ନାରଦ ! ତାର ଆଗମନ ହୋଇଥିଲା ବିଶ୍ୱର ମଙ୍ଗଳ ପାଇଁ ଏବଂ ସେ ପ୍ରତ୍ୟାଗମନ କଲା ବିଶ୍ୱର କଲ୍ୟାଣ ନିମିତ୍ତ ।

ଶିବଙ୍କର ଶେଷ ବାକ୍ୟଟି ନାରଦଙ୍କୁ ଅବୋଧ୍ୟ ପରି ବୋଧ ହେଲା । ସେ ବିସ୍ମୟାଭିଭୂତ ହୋଇ ବ୍ୟକ୍ତ କଲେ, "କପରି ପ୍ରଭୋ"

ଶିବଙ୍କର ପ୍ରସନ୍ନ ବଦନ ମଣ୍ଡଳରୁ ନିସୃତ ହେଲା, ଦକ୍ଷ, ପ୍ରଜାପତି ଆସନରେ ଅଧିଷ୍ଠିତ ହେଲା ପରେ ସେ ନିଜକୁ ଏକ ବିରାଟ ପୁରୁଷ ହୋଲି ମନେକଲା । ତାର ସୃଜନୀ ଶକ୍ତି ଦ୍ୱାରା ଅଣଷଠି କନ୍ୟା ସୃଷ୍ଟିକରି ବିବାହ ଦେଲା ବିଶିଷ୍ଟ ବ୍ୟକ୍ତି ମାନଙ୍କୁ । ତଦ୍ୱାରା ଦକ୍ଷ୍ୟ ନମସ୍ୟ ହୋଇଉଠିଲା ପ୍ରତ୍ୟେକଙ୍କର । ପ୍ରଜାପତି ଆସନରେ ଅଧିଷ୍ଠିତ ହୋଇ ସେ ଭୁଲିଗଲା ତାର ଦାୟିତ୍ୱ ଅହଂ ଭାବରବଶବର୍ତ୍ତୀ ହୋଇ । ସେ ମନେକଲା ବିଶ୍ୱକୁ ଏକ କ୍ରୀଡନକ ପିତୁଳା ଭଳି । ତେଣୁ ଅବମାନନା କଲା ଚରାଚରର ନିୟମକୁ । ତାର କୁକର୍ମରେ ବିଶ୍ୱସାରା ଅଶାନ୍ତିର ବହ୍ନି ଜଳିଉଠିଲା । ଜଗତର ପୁଞ୍ଜିଭୂତ ଅଶାନ୍ତି ଦେବୀ ପ୍ରସୂତିଙ୍କ ଗର୍ଭରେ ଅବସ୍ଥାନ କଲା କନ୍ୟା ରୂପରେ ସର୍ବଲୋକର ସାଦୃଶ୍ୟ ଧରି ଜନ୍ମ ହେଲେ ସତୀ । ତଥାପି ମଧ୍ୟ ଦକ୍ଷ ଅକ୍ଷମ ହେଲା ବୁଝିବାକୁ ବିପୁଳ ସୌନ୍ଦର୍ଯ୍ୟ ଧରି ଏ କିଏ ଜନ୍ମ ନେଲା ତା ଔରସରେ ।

ଈଶ୍ୱରଙ୍କର କର୍ମରହିତ ଅବସ୍ଥା ହିଁ ବ୍ରହ୍ମ ପଦବାଚ୍ୟ ଏବଂ ସକ୍ରିୟ ଅବସ୍ଥା ହିଁ ଶକ୍ତି ପଦବାଚ୍ୟ ଯାହା କ୍ରିୟାଶୀଳ ତାହାହିଁ ପରିବର୍ତ୍ତନଶୀଳ । ଶକ୍ତିକୁ ମାୟା ଏବଂ ଜ୍ଞାନକୁ (ଶିବକୁ) ବ୍ରହ୍ମ କୁହାଯାଏ । ବ୍ରହ୍ମର କ୍ରିୟାଶୀଳ ଅବସ୍ଥା ହିଁ ଶକ୍ତି ଜ୍ଞାନର (ଶିବର) ଆଶ୍ରୟ ପରିତ୍ୟାଗକରି ଏହି ଶକ୍ତି ଯେତେବେଳେ କ୍ରିୟାଶୀଳ ହୁଏ ସେତେବେଳେ ବିପଥରେ ପରିଚାଳିତ ହେବା ସ୍ୱାଭାବିକ୍ । ସେଥିପାଇଁ ଜ୍ଞାନ ବିବର୍ଜିତ ଅର୍ଥାତ ଈଶ୍ୱର ବିବର୍ଜିତ ଶକ୍ତିମାନ ଧ୍ୱଂସ ପ୍ରାପ୍ତ ହୁଅନ୍ତି । ଶକ୍ତି ଜ୍ଞାନ ବିମୁଖ, ଈଶ୍ୱର ବିମୁଖ ହେଲେ ଆସୁରିକ ଶକ୍ତି ନାମେ ଅଭିହିତ ହୁଏ । ସେହି ଶକ୍ତି ହୁଏ ଧ୍ୱଂସର କାରଣ ଏବଂ ଈଶ୍ୱର ଯୁକ୍ତ ଶକ୍ତିହୁଏ ଶାନ୍ତିର— ଅମୃତର କାରଣ । ଏହି ଅନନ୍ତ ବିଶ୍ୱର ନିମ୍ନଭାଗରେ ଅବସ୍ଥାନ କରିଛନ୍ତି ଏକ ପ୍ରଜ୍ଞାମୟ ଜାଗ୍ରତ ପୁରୁଷ । ସେହି ପୁରୁଷର ବର୍ତ୍ତମାନର ଶକ୍ତି କ୍ରିୟାଶୀଳ । ସେହି ଶକ୍ତିର ଦୁଇ ଭଙ୍ଗିମା । ଗୋଟିଏ "ଭୋଗାଭି ମୁଖୀ" ଏବଂ ଅପରଟି "ଅପବର୍ଗାଭି ମୁଖୀ" । ଗୋଟିଏ "ଅଭ୍ୟୁଦୟାଭି ମୁଖୀ" ଅପରଟି "ନିଃଶ୍ରେୟସାଭି ମୁଖୀ" । ଦକ୍ଷ ଶ୍ରେଣୀର ବ୍ୟକ୍ତି ଏହି "ଅଭ୍ୟୁଦୟ ଅଭିମୁଖୀ" ଅଥବା "ଭୋଗାଭି ମୁଖୀ" ଶକ୍ତିକୁ ସାନନ୍ଦେ ଗ୍ରହଣ କରନ୍ତି ଏବଂ ମୁକ୍ତି ଅଭିମୁଖୀ ଶାନ୍ତ ବ୍ୟକ୍ତିଗଣ ନିଃଶ୍ରେୟ ସଦାପ୍ରିୟା ଶକ୍ତିକୁ ସାଦରେ ଅଭ୍ୟର୍ଥନା ଜ୍ଞାପନ କରନ୍ତି ।

ଆଜି ଦକ୍ଷର ସେ ଅହମିକା ନାହିଁ । ସତୀଙ୍କ ପ୍ରତି ତଥା ଶିବ ନିୟମ ପ୍ରତି କରିଥିବା ଅବଜ୍ଞାର ସମୁଚିତ ଶାସ୍ତି ସେ ପାଇଛି । ଚିରଦିନ ପାଇଁ ସେ ହରାଇ ବସିଛି ତାର ସୁନ୍ଦର ମାନବ ମୁଖ । ଛାଗଳ ମସ୍ତକ ଭୂଷିତ ହୋଇ ସେ ଲଜ୍ଜା ଓ ଅପମାନରେ ସଢ଼ୁଛି ଗୃହ କୋଣରେ । ଆଜ ସତୀ ! ହେଇ ଲକ୍ଷ୍ୟକର ଦେଖ ସତୀ ମୋର, ବିଶ୍ୱର ମଙ୍ଗଳପାଇଁ ପ୍ରତି ଗ୍ରହରେ ଅବସ୍ଥାନ କରିଛି, ପ୍ରତି ଗ୍ରହରେ ରାଜତ୍ୱ କରି ଚାଲିଛି ।"

ନାରଦ ଲକ୍ଷ୍ୟକଲେ ଶୂନ୍ୟମଣ୍ଡଳରେ ଘୂର୍ଣ୍ଣାୟମାନ ହେଉଥିବା ସମସ୍ତ ଗ୍ରହମାନଙ୍କୁ । ଶନି, ବୃହସ୍ପତି ବୁଧ, ମଙ୍ଗଳ, ରବି; ଚନ୍ଦ୍ର, ଶୁକ୍ର, କାହିଁ ? ପ୍ରତ୍ୟେକ ତ ଶୂନ୍ୟ ମଣ୍ଡଳରେ ଘୂର୍ଣ୍ଣାୟମାନ । କୌଣସି ଗ୍ରହରେ ତ ସତୀଙ୍କର ଲେଶ୍ ମାତ୍ର ଚିହ୍ନବର୍ଣ୍ଣ ନାହିଁ । ପୁନଃ ପୁନଃ ନାରଦ ଲକ୍ଷ୍ୟକଲେ ଗ୍ରହମାନଙ୍କୁ, "ହେଇ ଆକାଶ ମାର୍ଗରେ ରବି ମହାଗ୍ରହ

ଘୂର୍ଣ୍ଣାୟମାନ ହେଉଛନ୍ତି । ତାଙ୍କର ଜବାକୁସୁମାଲୋକ ଉଚ୍ଛୁରିତ ହୋଇ ପଡ଼ୁଛି ପୃଥିବୀ ଉପରେ । ତାଙ୍କର ତେଜୋମୟ ମହାଜ୍ୟୋତିକୁ ଲକ୍ଷ୍ୟକରିବା ସହଜସାଧ୍ୟ ହେଉନାହିଁ । ପ୍ରତି ମୂହୂର୍ତ୍ତରେ ତାଙ୍କର ସହସ୍ର ଚଣ୍ଡ ରଶ୍ମି ଛୁଟି ଆସୁଛି ପୃଥିବୀ ବକ୍ଷକୁ । ପ୍ରଜ୍ୱଳିତ ଉଜ୍ଜ୍ୱଳ ଦୀପ୍ତିରେ ସାରା ଆକାଶ ଦୀପ୍ତ ହୋଇ ଉଠିଛି । ନିଷ୍ଠୁର କଶାଘାତ ଉପରେ ତମଃନିର୍ମ୍ଳାପନ କରୁଛି ଦୂରରୁ ଦୂରକୁ । ସପ୍ତ ରଙ୍ଗର ସପ୍ତାଶ୍ୱ ଜବାକୁସୁମ ବର୍ଣ୍ଣା ମହାଜ୍ୟୋତି ଦିନକରଙ୍କୁ ରଥରେ ବସାଇ ଧାଇଁ ଚାଲିଛନ୍ତି ମହାଘୋର ତମଃପଙ୍କରେ । ଶ୍ରମଜନିତ କ୍ଲାନ୍ତି ଅପନୋଦନ ପାଇଁ ଦକ୍ଷ କନ୍ୟା ଛାୟା ଏବଂ ମାୟା ତାଙ୍କ କଡ଼େ କଡ଼େ ରହିଛନ୍ତି । କାହିଁ, ମହାମାୟା 'ସତୀ' ତ ସେଠାରେ ଦୃଶ୍ୟ ମାନ ହେଉ ନାହାନ୍ତି ?

ନାରଦ ଅନୁସନ୍ଧିତ୍ସୁ ନେତ୍ରରେ ପୁନର୍ବାର ଆକାଶ ମାର୍ଗକୁ ନିରୀକ୍ଷଣ କରିବାକୁ ଲାଗିଲେ । ତାଙ୍କ ଦୃଷ୍ଟିପଥାରୂଢ଼ ହେଲେ ଚନ୍ଦ୍ର । ଦିବ୍ୟ ଶଙ୍ଖ ତୁଷାର ବର୍ଣ୍ଣା ଚନ୍ଦ୍ରଙ୍କର ଶୀତଳ ରଶ୍ମି ନାରଦଙ୍କ ନେତ୍ର ଯୁଗଳକୁ ଅନୁକୂଳତା ପ୍ରଦ ହେଲା । ଦଶାଶ୍ୱରଥରେ ଉପବିଷ୍ଟ ହୋଇ କବି, ଚିତ୍ରକର, ପ୍ରେମିକା, ପ୍ରେମିକ, ଦର୍ଶକ ଆଦିଙ୍କ ମନ ମୁଗ୍ଧକରି ସେ ଚାଲିଛନ୍ତି ରାତିଦେବୀର ଶୋଭା ବର୍ଦ୍ଧନ କରି । ପ୍ରଜାପତି 'ଦକ୍ଷ' ଙ୍କ ସପ୍ତବିଂଶ କନ୍ୟା ତାଙ୍କୁ ବେଷ୍ଟନ କରି ଚାଲିଛନ୍ତି । ଚନ୍ଦ୍ର ବହୁଭାବେ ଦକ୍ଷଙ୍କ ଚତୁର୍ଥ କନ୍ୟା ରୋହିଣୀକୁ ଲକ୍ଷ୍ୟକରି ମନ୍ଦ ମନ୍ଦ ହାସ୍ୟରତ । ସତୀଙ୍କର ଚିହ୍ନବର୍ତ୍ତିତ ସେଠାରେ ସେ ଦେଖିଲେ ନାହିଁ ।

ତାହାର ଊର୍ଦ୍ଧ୍ୱକୁ ବିଦ୍ୟୁତ ପୁଞ୍ଜିଭଳି ପ୍ରଭାମୟ ଲୋହିତାଙ୍ଗ ମଙ୍ଗଳ । ଯୋଦ୍ଧୃପୁରୁଷ ବେଶରେ ଖଡ୍‌ଗ, ଗଦା, ଶକ୍ତି ଧାରଣ କରି ମେଷ ବାହାନରେ ସେ କ୍ଷିପ୍ର ଗତିରେ ଧାଇଁ ଚାଲିଛି ଆକାଶ ମାର୍ଗରେ ରେ ରେ କାର ଧ୍ୱନିକରି । ତାର ଲୋହିତାଲୋକ ପୃଥିବୀ ପୃଷ୍ଠରେ ପତିତ ହୋଇ ବଳବାନ, ବୀର୍ଯ୍ୟବାନ, ମଦୋନ୍ମତ୍ତ କରୁଛି ଲୋକ ଜଗତକୁ । ଦକ୍ଷ ଭଳି ବାସୁବାଧ ସ୍ୱଭାବକୁ ନାରଦ ସମର୍ଥନ କରି ପାରିଲେ ନାହିଁ । ସେ ସେହି ବୀର ପୁରୁଷ ମଧ୍ୟରେ ସତୀଙ୍କର କୌଣସି ଚିହ୍ନବର୍ତ୍ତ ନପାଇ ଘୃଣାରେ ଚକ୍ଷୁ ଫେରାଇଲେ ଅନ୍ୟ ଆଡ଼େ । ପ୍ରତ୍ୟୁଷମାଣ ହେଲେ ମହାଗ୍ରହ ବୃହସ୍ପତି । ସ୍ୱର୍ଣ୍ଣରାଗ ରଞ୍ଜିତ ଅଙ୍ଗକାନ୍ତି ଭୂ-ପୃଷ୍ଠକୁ ପରିଷ୍କାର ଭାବେ ଦୃଶ୍ୟ ନ ହେଲେ ମଧ୍ୟ ନାରଦଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼ାଇ ପାରିଲା

ନାହିଁ । ଦେବଗୁରୁ ବୃହସ୍ପତିଙ୍କୁ ନାରଦ ପୁନଃ ପୁନଃ ନିରୀକ୍ଷଣ କରିବାକୁ ଲାଗିଲେ । ସର୍ବଜ୍ଞ, ଦୟାବାନ ଚରିତ୍ର ବୃହସ୍ପତି ମନ୍ଥର ବାହାନରେ ଅକ୍ଷ, କମଣ୍ଡଳୁ ଧାରଣ କରି ସର୍ବ ଲୋକଙ୍କୁ ଦୃଷ୍ଟି ନିକ୍ଷେପ କରି ଚାଲିଛନ୍ତି । ଦକ୍ଷଙ୍କ କନ୍ୟା ତାରାଙ୍କ ଉପରେ ତାଙ୍କ ଦକ୍ଷକର ଅବସ୍ଥା । ନାରଦ ଯୁକ୍ତକର ହୋଇ ଗାଇ ଉଠିଲେ,—

"ଦେବତାନା ମୃଷୀଣା ଚ ଗୁରୁଂ କନକ ସନ୍ନିଭଂ
ବନ୍ଦେଭକ୍ତ୍ୟା ତ୍ରିଲୋକେଶଂ ଦେବ ଦେବଂ ବୃହସ୍ପତିଂ" ।

ବହୁ ଊର୍ଦ୍ଧ୍ୱରୁ ବୃହସ୍ପତି ବକ୍ର ନେତ୍ର କରି ନାରଦଙ୍କୁ ଦୃଷ୍ଟି ଦେଲେ । ଆଶୀଷ ଦେଲେ ଦେବଙ୍କୁ । କିନ୍ତୁ ଦେଖା ସର୍ବଲୋକ ଜନନୀ ସତୀ କାହାନ୍ତି ? ସେତ ଦେଖିପାରୁ ନାହାନ୍ତି ସତୀଙ୍କୁ ସେଠାରେ ।

ନାରଦ ପୁନର୍ବାର ଚକ୍ଷୁଆନତ କଲେ ବୃହସ୍ପତିଙ୍କ ଠାରୁ । ଦେଖି ଆକାଶ ମାର୍ଗରେ ଦୃଶ୍ୟମାନ ହେଉଛନ୍ତି । ଇନ୍ଦ୍ରନୀଳଦ୍ୟୁତି ଦକ୍ଷକନ୍ୟା, ରତ୍ନଗର୍ଭ ସମ୍ଭୂତ ରବିସୁତ ଶନି । ଯାହାଙ୍କ କଞ୍ଚିତ ବକ୍ର ନେତ୍ରରେ ସ୍ୱୟଂ ଦେବଦେବ ଯୁଗାବଧି ଅତଳ ଜଳରେ ନିଜକୁ ଲୁକାୟିତ କଲେ । ସେ ଆକାଶ ମାର୍ଗରୁ ଲୋଲୁପ ଦୃଷ୍ଟି ପୃଥିବୀ ଉପରେ ନିକ୍ଷେପ ପୂର୍ବକ ଏକ ଗୃଧ୍ର ପୃଷ୍ଠରେ ଉପବେଶନ କରି ଚାଲିଛନ୍ତି । କାହିଁ ସେଠାରେ ତ ଜନନୀ ସତୀ ନାହାନ୍ତି !

ସର୍ବଲୋକ ତ୍ରାସକାରୀ ଶନିଙ୍କଠାରୁ ନାରଦ ଦୃଷ୍ଟି ଫେରାଇ ଆଣିଲେ । ତାଙ୍କର ଦୃଷ୍ଟି ନିପତିତ ହେଲା ମହାଗ୍ରହ ବୁଧଙ୍କ ଉପରେ । ପ୍ରିୟଙ୍ଗୁ ପୁଷ୍ପସମ ଶ୍ୟାମରଙ୍ଗ ଅଙ୍ଗ କାନ୍ତି ସର୍ବଗୁଣେ ପରିପୂର୍ଣ୍ଣ ସୌମ୍ୟ ବଦନ ସୋମସୁତ ବୁଧ ସାମୁଦ୍ରିକା କୃତିରେ ସିଂହାରୂଢ଼ ହୋଇ ଚାଲିଛନ୍ତି ଆକାଶ ବକ୍ଷ ଚିରି । ତାଙ୍କ ବକ୍ଷ ଦେଶରେ ଶୋଭା ପାଉଛି ପୀତବର୍ଣ୍ଣ ମାଲ୍ୟ । ସର୍ବ ଲକ୍ଷଣ ଯୁକ୍ତ ଶାନ୍ତମୂର୍ତ୍ତି । ବୁଧଙ୍କ ଉପରେ ଦୃଷ୍ଟିନିବଦ୍ଧ କରି ନାରଦ ସତୀଙ୍କ ସନ୍ଧାନ ନେଲେ । କାହିଁ ? ବୁଧ ଗ୍ରହରେ ତ ସତୀଙ୍କର ଆବିର୍ଭାବ ହେବାର କୌଣସି ସଙ୍କେତ ସେ ପାଉ ନାହାନ୍ତି ।

ଦୃଶ୍ୟମାନ ହେଲେ ମହାଗ୍ରହ ଶୁକ୍ର । କୁନ୍ଦ ପୁଷ୍ପବର୍ଣ୍ଣ ଉଜ୍ଜ୍ୱଳ ଦୈତ୍ୟଗୁରୁ ସର୍ବଶାସ୍ତ୍ର ନିପୁଣ ଶୁକ୍ରଙ୍କୁ ଦର୍ଶନ କରି ନାରଦଙ୍କ ମନରେ ଏକ ମହାଭାବ ଜାଗ୍ରତ ହେଲା । ମନେପଡ଼ିଲା ସୁରଅବୋଦ୍ଧ୍ୟ ସୁରର

ସଂସ୍ପର୍ଶରେ ଗୁରୁ ଶୁକ୍ରଙ୍କ ଦୁର୍ଦ୍ଦଶା । ତତ୍ପରେ ଶୁକ୍ରଙ୍କ ଅଭିଶାପରେ ସୁରାର ଚରମ ଅବସ୍ଥା । ପୁନର୍ବାର ସ୍ମରଣ ହେଲା ଜାତିର ଅଧଃପତନ ହେଲେ ମାତ୍ର ନିପୁଣ ଶୁକ୍ରଙ୍କ ମାତ୍ରବାକ୍ୟର ଯଥାର୍ଥତା । ମହାକବି, ଦୈତ୍ୟ ମନ୍ତ୍ରୀ ଭାର୍ଗବଙ୍କ ଉଦ୍ଦେଶ୍ୟରେ ନାରଦ ସ୍ତୁତିକରି ହୋଇ ଗାଇ ଉଠିଲେ—

"ହିମକୁନ୍ଦେନ୍ଦୁ ସଂକାଶଂ ଦୈତ୍ୟାନାଂ ପରମଂ ଗୁରୁଂ
ସର୍ବଶାସ୍ତ୍ରପ୍ରବକ୍ତାରଂ ଭାର୍ଗବଂ ପ୍ରଣମାମ୍ୟହଂ"

କିନ୍ତୁ ସେଥି କାହାନ୍ତି ଶୁକ୍ର ମହାଗ୍ରହରେ ? ନାରଦ ପୁନଃ ପୁନଃ ନିରୀକ୍ଷଣ କରି ହତୋତ୍ସାହ ହୋଇ ପଡ଼ିଲେ । ପୁନର୍ବାର ଆକାଶ ମାର୍ଗକୁ ନିରୀକ୍ଷଣ କରୁ କରୁ ଧୂମ୍ରାଗ୍ରହ ରାହୁଙ୍କୁ ଦୃଷ୍ଟି ହେଲେ । ମହାଘୋର ମଗରକୃତି ଅର୍ଦ୍ଧକାୟ ଦନ୍ତସୂଚୀ ସିଂହିକାତନୟ ରାହୁର କରାଳ ବଦନ ଲକ୍ଷ୍ୟକରି ନାରଦ କ୍ଷଣକ ପାଇଁ ଇତସ୍ତତଃ ହୋଇ ଉଠିଲେ । ସୂର୍ଯ୍ୟ ଚନ୍ଦ୍ର ଯାହାର ବିରାଟ ମୁଖଗହ୍ୱରରେ ପତିତ ହୋଇ ଖାନ୍ତ ଖାନ୍ତ, ଧ୍ୱନିରେ ପୃଥିବୀ ବକ୍ଷକୁ ଶୋକଚ୍ଛାୟାରେ ମ୍ଲାନ ନିସ୍ତବ୍ଧ କରି ଦିଅନ୍ତି ନାରଦ ତାର ସେ ମୁଖଗହ୍ୱରକୁ ଲକ୍ଷ୍ୟକରି କ୍ଷଣକ ପାଇଁ ଚକ୍ଷୁ ବନ୍ଦ କରି ଦେଲେ । ତତ୍ପର ମୁହୂର୍ତ୍ତରେ ନୂତନ ସାହସ ସଞ୍ଚୟ କରି ନିରୀକ୍ଷଣ କଲେ ସେହି ଗ୍ରହରେ ଦେବୀ 'ସତୀ'ଙ୍କୁ । କାହିଁ ? ସେଠାରେ ତ ସେ ଦୃଶ୍ୟ ହେଉ ନାହାନ୍ତି ।

ଅବଶେଷରେ ମହାତ୍ମା ଶିବଙ୍କ ଆଡ଼େ ଦୃଷ୍ଟି ଫେରାଇ ଆଣୁ ଆଣୁ ନୟନ ପଥାରୂଢ଼ ହେଲେ ଅନ୍ୟ ଏକ ଧୂମ୍ର ମହାଗ୍ରହ କେତୁ । ଜଳଦ ଧୂମ୍ର ବର୍ଣ୍ଣ ସର୍ପାକୃତି ଶରୀର କେତୁ ! ଅମୃତ ପାନରତ ସିଂହିକା ସୁତର କର୍ତ୍ତିତ ଶରୀର କେତୁ କି ଭୟଙ୍କର ହୋଇଛି ସତେ ! ମୁହୂର୍ତ୍ତକ ମଧ୍ୟରେ ସୂର୍ଯ୍ୟ ଚନ୍ଦ୍ରଙ୍କ ସତ୍ତାକୁ ଯେ ଲୁପ୍ତ କରିପାରେ ସେଭଳି ଏକ ଦାନବଶାମଣି ନାଶକାରୀ ଗ୍ରହରେ ଦେବୀ ସତୀ ଅବସ୍ଥାନ କରିବା କଣ ସମ୍ଭବ ? ନାରଦ ବିମର୍ଷ ବଦନରେ ମୁଖ ଫେରାଇ ଆଣିଲେ ମହାଯୋଗୀ ଶିବଙ୍କ ଆଡ଼କୁ । ନାରଦଙ୍କ ନୈରାଶ୍ୟମଣ୍ଡିତ ବଦନ ମଣ୍ଡଳ ଲକ୍ଷ୍ୟ କରି ତାଙ୍କ ମୁଖ କ୍ଷୀଣ ହାସ୍ୟରେ ଶୋଭା ପାଇଲା । ନାରଦ କିଛି କହିବା ପୂର୍ବରୁ ତ୍ରିକାଳଜ୍ଞ ଶିବ କହିଲେ ସତୀକଣ ତୁମ ଦୃଷ୍ଟିପଥାରୂଢ଼ ହେଲେ ନାହିଁ ।

ନାରଦ ମସ୍ତକ ସଞ୍ଚାଳନ କରି ନାସ୍ତିକଲେ।

ତତ୍‌ପରେ ହଠାତ୍ ଶିବଙ୍କ ମୁଖ ଗମ୍ଭୀର ହୋଇଗଲା । ସେହି ଗମ୍ଭୀର ମୁଖ ଭୟଙ୍କରରୁ ଭୟଙ୍କର ହୋଇ ଉଠିଲା । ସାରା ଅଙ୍ଗ ପ୍ରତ୍ୟଙ୍ଗ ଉତ୍ତାପରେ ଫାଟି ପଡ଼ିବାକୁ ଲାଗିଲା । ଦେଖୁ ଦେଖୁ ଶିବ ବିରାଟ ମୂର୍ତ୍ତି ଧାରଣ କରି ତାଣ୍ଡବ ନୃତ୍ୟ କରିବାକୁ ଲାଗିଲେ । ସେହି ନର୍ତ୍ତନରେ ପୃଥିବୀ କମ୍ପମାନ ହେବାକୁ ଲାଗିଲା ପ୍ରବଳ ବେଗରେ ବାତ୍ୟା ଆନ୍ଦୋଳିତ କଲା ଶୂନ୍ୟସ୍ଥିତ ମେଘମାନଙ୍କୁ । ଚତୁର୍ଦ୍ଦିଗରୁ ଆବର୍ତ୍ତକ, ସମ୍ବର୍ତ୍ତକ, ଦ୍ରୋଣ, ପୁଷ୍କର ମେଘମାନ ଏକତ୍ରିତ ହୋଇ ଝଡ଼ର ସୃଷ୍ଟି କଲେ । ଘୋର ଅଶନି ନାଦରେ ବିଶ୍ୱବକ୍ଷ ପ୍ରକମ୍ପିତ ହେଲା । ମହାପ୍ରଳୟ ଆସନ୍ନ ଜାଣି ନାରଦ ଭୟରେ ଚକ୍ଷୁ ବନ୍ଦ କଲେ ।

ହଠାତ୍ ଭୟଙ୍କର ଘର୍ଘର ନାଦଶୁଣି ନାରଦ ଚକ୍ଷୁ ଉନ୍ମୋଚନ ପୂର୍ବକ ଦର୍ଶନ କଲେ ଆକାଶ ମାର୍ଗରେ ଏକ ବଳୟ ମଧ୍ୟରେ ଘୂର୍ଣ୍ଣାୟମାନ ମହାଗ୍ରହ ଶନି । ତାଙ୍କ ସ୍ୱେଚ୍ଛାଚରଣାର ପଥରୋଧ କରିଛନ୍ତି କରାଳ ବଦନା, ଲୋଳଜିହ୍ୱା, ନରମୁଣ୍ଡମାଳିନୀ ଏକ ଭୀଷଣ ମୂର୍ତ୍ତି । ତାଙ୍କ ଚତୁର୍ହସ୍ତ ମଧ୍ୟରୁ ବାମ ଊର୍ଦ୍ଧ୍ୱ ହସ୍ତରେ ଖଡ୍‌ଗ ଏବଂ ନିମ୍ନ ହସ୍ତରେ ସଦ୍ୟ କର୍ତ୍ତିତ ମସ୍ତକ । ଦକ୍ଷ କରର ଊର୍ଦ୍ଧ୍ୱ ହସ୍ତରେ ଅଭୟମୁଦ୍ରା ଓ ନିମ୍ନ ହସ୍ତରେ ବରମୁଦ୍ରା । ଉଦୟକାଳୀନ ଭାନୁ ବର୍ଣ୍ଣ ସଦୃଶ ତ୍ରିନୟନା । ଘନତିମିର ଭଳି ଆଲୁଳାୟିତ ମୁକ୍ତ କୃଷ୍ଣକେଶ ବାୟୁ ବାଟେ ଉଡ୍‌ଡୀୟମାନ । ଶବଯୁଗ୍ମ ଦୋଦୁଲ୍ୟମାନ କର୍ଣ୍ଣଦ୍ୱୟରେ । ଲୋଳଜିହ୍ୱା ଶୁକ୍ଳ ଦଶନ ଦ୍ୱାରା ସଂଯତ । ପ୍ରଫୁଲ୍ଲ ହାସ୍ୟବଦନ । ଦେବୀଙ୍କ ଓଷ୍ଠପ୍ରାନ୍ତ ଦ୍ୱୟରୁ ରୁଧିରଧାରା ବହିର୍ଗତ । ଉଲଗ୍ନ ଦିଗମ୍ବରୀ ଦେବୀଙ୍କ ସ୍ତନଦ୍ୱୟ ସ୍ଥୂଳ ଏବଂ ଉନ୍ନତ । ମହାକାଳୀ ସ୍ୱରୂପା ଦେବୀ ମହାକାଳ ଶିବଙ୍କ ସହିତ ବିପରୀତ ରତିମଗ୍ନ । ଶବହସ୍ତ କାଞ୍ଚିଶୋଭିତ କଟିଦେଶେ । ସ୍ୱୟଂ ଶିବ ପତିତ, ପଦତଳେ, ଶବ ରୂପେ । ଭୟଙ୍କର ଶବଭକ୍ଷ ଶିବାଗଣ ଚତୁର୍ଦ୍ଦିଗେ ବେଷ୍ଟିତା । ଦେବୀଙ୍କ ଗମ୍ଭୀର ନାଦରେ ଦିଗ୍‌ମଣ୍ଡଳ ପରିପୂର୍ଣ୍ଣ ଏହିପରି ଏକ ଭୟଙ୍କର ରୂପ ଦର୍ଶନ କରି ନାରଦ ହତ୍‌ବାକ୍ ହୋଇଗଲେ । ସେ ଭୟ ବିଜଡ଼ିତ ନେତ୍ରରେ ଶିବଙ୍କ ଆଡ଼େ ଦୃଷ୍ଟି ନତ କରନ୍ତେ ଶିବ ଉଚ୍ଚସ୍ୱରରେ କହିଲେ, "ତୁମେ କଣ ଦେଖିଲ ନାରଦ 'ମା'ର ଏହି ଅଦ୍ଭୁତ ରୂପ ?"

ନବୋଧଙ୍କ ଭକ୍ତ ନାରଦ କହିଲେ, "ଏ କଣ ପ୍ରଭୁ ! 'ମା'ଙ୍କ ଏକ ବେଶ ?

ଶ୍ରେଷ୍ଠ ସାଧକ ପରମଯୋଗୀ ଶିବ 'ମା'ର ଦକ୍ଷିଣକାଳୀମୂର୍ତ୍ତିକୁ ନାରଦଙ୍କୁ ପୁନଃ ପୁନଃ ଦର୍ଶନ କରାଇ କହିଲେ, ତୁମେ କଣ ବୁଝିପାରୁ ନାହଁ ନାରଦ, 'ମା'ର ଏହି ରୂପ ଦର୍ଶନ କର ଏ ସେହି ପରମା ପ୍ରକୃତି, ଆଦ୍ୟାଶକ୍ତି 'ମା' କାଳିକା । ସମସ୍ତ ଜୀବଜଗତର ବାସନା କାମନାର ବୀଜ ନିହିତ ଅଛି ଏହି ଜଗଦ୍ଧାତ୍ରୀ ମଧ୍ୟରେ । ପ୍ରତ୍ୟେକ ଜୀବଜଗତକୁ ଆସିବା ପୂର୍ବରୁ କେଉଁଠି ଥିଲେ, କେଉଁ ରୂପରେ ଥିଲେ ତାହା କେହି ଜ୍ଞାତ ନୁହନ୍ତି । ଏପରି କି ମୃତ୍ୟୁ ପରେ କେଉଁଠାକୁ ଯିବେ, କେଉଁଠି ଜନ୍ମ ହେବେ କଣ କରିବେ ଆଦି ମଧ୍ୟ କାହାରି ଜ୍ଞାତସାରରେ ନାହିଁ । ଏହି ସଚରାଚର ଜୀବଜଗତ ଏପରି କି ତୁମେ ମୁଁ ମଧ୍ୟ ବୀଜାକାରରେ ସୂକ୍ଷ୍ମାତି ସୂକ୍ଷ୍ମାକାରରେ ଯାହାର ଅନ୍ତର ଗର୍ଭରେ ପୂର୍ବେ ଥିଲୁ, ରହିବୁ ମଧ୍ୟ ଏ ସେହି ଅନନ୍ତ ରୂପିଣୀ 'ମା' କାଳିକା । ଗତ ଭବିଷ୍ୟତ ଜୀବନ ଆଦି ଯେପରି ପ୍ରତ୍ୟେକଙ୍କ ସମ୍ମୁଖରେ ଅନ୍ଧକାର ଭଳି ଦୃଶ୍ୟ ହେଉଛି ସେହିପରି 'ମା'ର ବର୍ଣ୍ଣକାନ୍ତି ପ୍ରଗାଢ଼ ଅନ୍ଧକାର ଭଳି କୃଷ୍ଣ । ଏହି ଅସୀମ ଅନ୍ଧକାର ମଧ୍ୟରେ କେତେ ଗ୍ରହ କେତେ ନକ୍ଷତ୍ର ସୃଷ୍ଟି ହୋଇ ବିଲୟ ଲଭିଲେଣି ତାହା କିଏ କହିବ ? ଏହାର ଏହି ଲୀଳାଯୁକ୍ତ ଗତି କେଉଁ ଆବହମାନ କାଳରୁ ହୋଇଆସୁଛି ତାହା ମୁଁ ଅସଂଖ୍ୟବାର ଚେଷ୍ଟା କଲିଣି ଯୋଗଦ୍ୱାରା ଜାଣିବାକୁ ମାତ୍ର ସେହି ଅନ୍ଧକାର ମଧ୍ୟରେ ଯେତେଦୂର ଅଗ୍ରସର ହେଉଛି ସେତେ ଅନ୍ଧାର ସମ୍ମୁଖରେ ବଢ଼ିଉଠି କରି ଚାଲିଥିବାର ଦୃଷ୍ଟ ହେଉଛି କାଳ, ଅର୍ଥାତ୍ ସମୟ । ଏହି ସମୟକୁ କିଏ ବାଧା ଦେଇପାରିବ ?

ମୁଁ ଯୋଗବଳରେ ଜ୍ଞାତଥିଲି । ସତୀ ପିତ୍ରାଳୟ ଗମନ କଲେ । ସେ ଆଉ ପୁନର୍ବାର କୈଳାସକୁ ପ୍ରତ୍ୟାବର୍ତ୍ତନ କରିବେ ନାହିଁ । ସତୀ ଯେତେବେଳେ ଯିବାପାଇଁ ଇଚ୍ଛାପ୍ରକାଶ କଲେ ମୁଁ ସାଧାରଣ ବ୍ୟକ୍ତିଙ୍କ ପରି ବାଧା ଦେଲି । ମାତ୍ର ଯେତେବେଳେ ତାଙ୍କ ସେହି ଦଶ ମହାବିଦ୍ୟା ରୂପ ଦଶ ଦିଗେ ଦର୍ଶନ କଲି ସେତେବେଳେ ବାଧା ଦେବାର ସମସ୍ତ ନୈତିକତା ଲୁପ୍ତହୋଇ ବସିଲି । କାଳଚକ୍ରର ଗତିକୁ କିଏ ବା ରୋଧ କରିପାରିବ ?

କେହି ଯଦି ଜ୍ଞାତ ହୁଏ କ୍ଷଣକ ପରେ—ବା ମୁହୂର୍ତ୍ତକ ପରେ ମୋର ସ୍ତ୍ରୀ ବା ସ୍ୱାମୀ ଅଥବା ପୁତ୍ରର ମୃତ୍ୟୁ ହେବ । ସେ ଯଦି ସେହିଦିନ ବା ମୁହୂର୍ତ୍ତକୁ ଅତ୍ୟନ୍ତ ସ୍ପଷ୍ଟ ନିର୍ଣ୍ଣୟ କରେ, ଏପରି କି ସାବଧାନ, ତାର ସମସ୍ତ ଶକ୍ତି ଖର୍ଚ୍ଚକରି ସେହିଦିନ ବା ମୁହୂର୍ତ୍ତର ଗତିକୁ ରୋଧ କରିବାକୁ ଚେଷ୍ଟା କରିବ ତେବେ କଣ ସେ ରୋଧ କରିପାରିବ ! ଏହି କାଳର ଗତିକୁ ? ସେ ଯେପରି ନିଶ୍ଚଳ ଧୀର ମନ୍ଥର ଗତିରେ ଚାଲିଛି ସେହିପରି ଚାଲିଥିବ । ତାର ସେହି ଗତିକୁ ରୋଧ କରିବାର ଶକ୍ତି କାହାରି ନାହିଁ । ଯାହା ହେବାର ଅଛି ତାହା ତାର ଇଚ୍ଛା, ଯାହା ହେବାର ନାହିଁ ଶତଚେଷ୍ଟା କଲେ ମଧ୍ୟ ତାହା ହୋଇପାରିବ ନାହିଁ । କାହାରି ଚେଷ୍ଟା ସାଧନା ଦ୍ୱାରା ତା ଦ୍ୱାରା ନିର୍ଦ୍ଦିଷ୍ଟ ଘଟଣା କେବେ ରୋଧ କରି ହୁଏନା । ଯାହାହୁଏ ତାହା ସେ ହିଁ କରେ । ଅନ୍ୟମାନେ ନିମିତ୍ତ ମାତ୍ର ।

ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଏବଂ ଲୟକର୍ତ୍ତା ବ୍ରହ୍ମା, ବିଷ୍ଣୁ, କିମ୍ବା ମୁଁ ସେହି 'ମା'ର ଇଚ୍ଛାରେ ପରିଚାଳିତ ଥିଲୁ, ଅଛୁ ଏବଂ ରହିବୁ । ତା'ର ମାୟାରେ ଆମେ ଆବଦ୍ଧ, ତେଣୁ ଭବ ମଧ୍ୟରେ ଆମେ ଆନନ୍ଦିତ ହେଉଛୁ ବା ଦୁଃଖିତ ହେଉଛୁ । ମାତ୍ର ତାର କିଛି ନାହିଁ । କାହାରି ଦୁଃଖ ଶୋକରେ ସେ ଅଂଶ ଗ୍ରହଣ କରିପାରେନା । ସେ ନିର୍ଲିପ୍ତ ଭାବେ ଚାଲିଛି ମାୟା ଆବରଣ ଶୂନ୍ୟ ହୋଇ । ସେ ଯେପରି ଅନାଦିରେ ଚାଲିଛି ସେହିପରି ଚାଲିବ ମଧ୍ୟ । କାହାରିକୁ ମୁହୂର୍ତ୍ତକ ପାଇଁ ହେଲେ ବି ସେ ଅପେକ୍ଷା କରିବ ନାହିଁ । ତାକୁ ଆଚ୍ଛାଦନ କରି କିମ୍ବା କୌଣସି ଦ୍ୱାରା ତା କି ତାର ଗତିକୁ ରୋଧ କରି ହେବ ନାହିଁ ତେଣୁ ସେ ଉଲଗ୍ନା, ନୃତ୍ୟରତା ଏବଂ ଗତିଶୀଳା । ପଞ୍ଚମହାଭୂତ ମାୟା ଆବରଣ ଦ୍ୱାରା ଆଚ୍ଛାଦନ ହୋଇ ନ ଥିବା 'ମା'ର-ଉଲଗ୍ନ ରୂପ ଏକ ନିଦର୍ଶନ ।

ଏହାରି ଗର୍ଭରେ ପ୍ରତ୍ୟେକଙ୍କର ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ନିହିତ ଅଛି । ସାଧକମାନେ ସେମାନଙ୍କର ପ୍ରଗାଢ଼ ସାଧନା ଦ୍ୱାରା 'ମା'ର ଗର୍ଭର ଗହନ ତତ୍ତ୍ୱ ଜାଣିବାକୁ ଚେଷ୍ଟା କରନ୍ତି । କାରଣ କାଳର ଅନନ୍ତ ଗର୍ଭରେ ଜନ୍ମ, ମୃତ୍ୟୁ ଆଦି ସକଳ ବିଷୟ ନିହିତ ଅଛି । ତେଣୁ 'ମା'ର ସେହି କୁହେଳିକାମୟ ଅନନ୍ତ ଗର୍ଭରେ ପ୍ରବେଶ କରି ଭୂତ, ଭବିଷ୍ୟତ, ବର୍ତ୍ତମାନର ବିଷୟଗୁଡ଼ିକ ଜାଣିବାରେ ସକ୍ଷମ ହୋଇଥାନ୍ତି । ସେଥିପାଇଁ ଆକାଂକ୍ଷିତ ହୋଇ ମାନବମାନେ ସାଧକ ନିକଟକୁ ଧାଇଁଯାନ୍ତି

ସେମାନଙ୍କର ଦୁଃଖ ସୁଖ ଗ୍ରହଣ ନିମିତ୍ତ । ଜ୍ୟୋତିଷମାନେ ଗ୍ରହ ନକ୍ଷତ୍ରଙ୍କ ସମାବେଶ ଓ ସଂଯୋଗାଯୋଗର ତାତ୍ପର୍ଯ୍ୟ ଲକ୍ଷ୍ୟ କରି ଏହି କାଳଗତି ନିରୂପଣ କରିଥାନ୍ତି । ସମୟର ଅଧୀନ ବା କାଳର ଅଧୀନ ପ୍ରତ୍ୟେକ ଦେହଧାରୀଙ୍କର । ପ୍ରତ୍ୟେକ ଲୋକ ଏହି କାଳହସ୍ତରେ କ୍ରୀଡ଼ନକ ପିତୁଳସମ । କାଳର ପ୍ରଖର ସ୍ରୋତ ଅତିକ୍ରମ କରି ନ ପାରିଲେ ଜନ୍ମ ମୃତ୍ୟୁର ପ୍ରବାହ ମଧ୍ୟରୁ ରକ୍ଷା ପାଇବାର ଅନ୍ୟ କୌଣସି ଉପାୟ ନାହିଁ ନାରଦ । ଆତ୍ମଜ୍ଞାନ ନ ହେଲେ କାଳକୁ କେହି ଅତିକ୍ରମ କରିପାରେନା । ତେଣୁ ଆତ୍ମଜ୍ଞାନ ପର୍ଯ୍ୟନ୍ତ ବା ମୃତ୍ୟୁଞ୍ଜୟ ପର୍ଯ୍ୟନ୍ତ ପ୍ରତ୍ୟେକଙ୍କୁ ଗତିକରିବାକୁ ହୁଏ । ମୁଁ ନିଜେ ମୃତ୍ୟୁଞ୍ଜୟ ଶିବ ହେଲେ ମଧ୍ୟ ମୁଁ ଯେତେବେଳେ ମୋର କର୍ମଚ୍ୟୁତ ହେବ ସେତେବେଳେ ପୁନର୍ବାର ସେହି ଜନ୍ମ ମୃତ୍ୟୁର ପ୍ରବାହ ମୋତେ ଆକର୍ଷଣ କରିବ ।

ମା'ର ପଦତଳେ ନିର୍ଗୁଣ ବ୍ରହ୍ମ ଶବ ରୂପେ ଶାୟିତ । ସଗୁଣ ବ୍ରହ୍ମ 'ଇ'କାର ଯୁକ୍ତ ହୋଇ ମହାକାଳର ସମସ୍ତ ଶକ୍ତି ଗ୍ରହଣ କରି ନୂତନ ସୃଷ୍ଟି ପାଇଁ ସଗୁଣ ମହାକାଳଙ୍କ ସହିତ ବିପରୀତ ରତି ମଗ୍ନ । ସେ ପ୍ରତି ମୁହୂର୍ତ୍ତରେ ଅସଂଖ୍ୟ ଜଗତ୍ ସୃଷ୍ଟି କରି ଚାଲିଛି, ଧ୍ୱଂସ ମଧ୍ୟ କରି ଚାଲିଛି । ମୋତେ 'ଇ'କାର ଯୁକ୍ତ କରି ଶିବ ସେ କରିଛି ଏବଂ 'ଇ'କାର ହରଣ କରି ଶବ ସେହି କରିବ । ସେ 'ଶକ୍ତି' । ସମସ୍ତ ଶକ୍ତି ତାର, ତାରି ଶକ୍ତି ଦାନରେ ପ୍ରତ୍ୟେକ ବଳୀୟାନ ହୋଇଛନ୍ତି । ସେହି ଶକ୍ତି ଯେତେବେଳେ ଅଯଥା ଅପବ୍ୟୟ ହୁଏ ସେ ଆସେ ପୁନର୍ବାର ତାର ଶକ୍ତି ହରଣ କରି ନେବାକୁ ।

ଯେଉଁ ସାତବର୍ଣ୍ଣର ଅଧିକାର ସୂର୍ଯ୍ୟଙ୍କୁ ସେ କରିଛି ସେହି ସାତ ବର୍ଣ୍ଣରେ ତା ନିଜବର୍ଣ୍ଣ 'କୃଷ୍ଣ' ସନ୍ନିବେଶିତ କରିନାହିଁ । କୃଷ୍ଣବର୍ଣ୍ଣ ଅର୍ଥାତ୍ ବର୍ଣ୍ଣ ଶୂନ୍ୟ । ତେଣୁ ଗୁଣ ଦ୍ୟୋତକ ବର୍ଣ୍ଣ, 'ମା' ଠାରେ ନିର୍ଗୁଣ ବା ଗୁଣାତୀତ ନିର୍ଣ୍ଣୟ କରୁଛି । ଯେଉଁ ସାତଟି ବର୍ଣ୍ଣ ଶ୍ରେଷ୍ଠ ବର୍ଣ୍ଣ ବୋଲି ପରିଗଣିତ ହୋଇଛି ତନ୍ମଧ୍ୟରେ କୃଷ୍ଣବର୍ଣ୍ଣ ନାହିଁ ଏବଂ ଏହି କୃଷ୍ଣବର୍ଣ୍ଣ ସବୁ ବର୍ଣ୍ଣର ସମ୍ମିଶ୍ରଣରେ ଉଦ୍ଭବ ହୋଇଛି । କୃଷ୍ଣବର୍ଣ୍ଣ ବ୍ୟତୀତ ଅନ୍ୟ ବର୍ଣ୍ଣ ରୂପାନ୍ତରିତ ବା ବିକୃତ ହୋଇପାରେ ମାତ୍ର କୃଷ୍ଣବର୍ଣ୍ଣ ସର୍ବଦା ଅବିକୃତ ରହିବ । ତେଣୁ ନିତ୍ୟତା ଦ୍ୟୋତକ କୃଷ୍ଣବର୍ଣ୍ଣ ପରମାପ୍ରକୃତି ମା'ଠାରେ ହିଁ ସଂଯୁକ୍ତ ହୋଇଛି । ମା' ମୁକ୍ତକେଶୀ । କେଶର ସାଙ୍କେତିକ

ଅର୍ଥ ତ୍ରିଗୁଣ କ+ଅ+ଈଶ=କେଶ । 'କ' ଅର୍ଥାତ ବ୍ରହ୍ମା 'ଅ' ଅର୍ଥାତ୍ ବିଷ୍ଣୁ ଏବଂ 'ଈଶ' ଅର୍ଥାତ୍ ମୁଁ ନିଜେ ମହେଶ୍ୱର । ଏହି ତ୍ରିଦେବଙ୍କ ଗୁଣ ସତ୍ତ୍ୱ,ରଜ ତମ ରୂପେ ଯେ ମୁକ୍ତ ସେହି ମୁକ୍ତକେଶୀ ଗୁଣାତୀତା ଭଗବତୀ । ସେ ମଧ୍ୟ ଆମ୍ଭ ତ୍ରିଦେବଙ୍କ ମୋକ୍ଷଦାତ୍ରୀ ଚନ୍ଦ୍ର, ସୂର୍ଯ୍ୟ ଅଗ୍ନି ସଦୃଶ ତ୍ରିନେତ୍ରରେ ମା' ତାର ସୃଷ୍ଟ ସମସ୍ତ ଜଗତ ଏପରିକି ପ୍ରତ୍ୟେକଙ୍କୁ ସମଚକ୍ଷୁରେ ଲକ୍ଷ୍ୟ କରୁଛି । ସେ ତ୍ରି-ନେ-ତ୍ରା, ତ୍ରିକାଳ ରୂପୀ ଏବଂ ଇଚ୍ଛା, ଜ୍ଞାନ ଓ କ୍ରିୟା ଶକ୍ତି ଦ୍ୟୋତକ ।

ଏହି ଧୂମା ମହାକାଳଙ୍କୁ ଲୋକ ଜଗତ ଦକ୍ଷିଣକାଳୀ, ଶ୍ମଶାନ କାଳୀ ରୂପେ ପୂଜା କରିବେ । ଦକ୍ଷିଣଦିଗବାସୀ 'ଯମ' ଯାହାର ନାମ ସ୍ମରଣ ମାତ୍ରେ ଜୀବ ଜଗତର ହୃତ୍‌କମ୍ପ ଜାତ ହୁଏ, ସେହି 'ଯମ' ମା' କାଳିକାର ନାମ ଯାହା ମୁଖରୁ ଶ୍ରବଣକରେ ତାକୁ ସ୍ପର୍ଶ କରି ପାରେ ନାହିଁ ବୋଲି ଦେବୀଙ୍କ ନାମ ଦକ୍ଷିଣକାଳ ନାମେ ଅବହିତ, ଶ୍ମଶାନର ମହତ୍ତ୍ୱ ମୁଁ ଶିଖିଲି ସେହି ମା'ଠାରୁ । ଶବ ଯେଉଁଠାରେ ଶୁଏ ତାକୁ ହିଁ ଶ୍ମଶାନ କୁହନ୍ତି । ସେ ମା' । ଜନ୍ମ ଦେଇଛି ସଚରାଚରକୁ । ମୃତ୍ୟୁ ପରେ ସେ ହିଁ କୋଳରେ ଧରେ ସଚରାଚରକୁ । ପୃଥ୍ୱୀ, ଆପ, ତେଜ, ବାୟୁ ଏବଂ ଆକାଶ ଏହି ପଞ୍ଚ ମହାଭୂତ କେବଳ ହିଁ ବ୍ରହ୍ମଠାରେ ଲୀନ ହୁଅନ୍ତି । ଯେଉଁ ବ୍ରହ୍ମ ନିଷ୍କଳ, ଅନନ୍ତ, ଅକ୍ଷର, କୂଟସ୍ଥ ଏବଂ ନିର୍ଗୁଣ ଯାହା ଦେହରେ ବ୍ରହ୍ମା, ବିଷ୍ଣୁ ଏବଂ ମୁଁ ଲୀନ ହେବୁ ସେ ମାତୃରୂପା ଭଗବତୀ ଛଡ଼ା ଆଉ କିଏ ହୋଇପାରେ ? ତେଣୁ ଶ୍ମଶାନରେ ସେହି ମା' ସଦା ବାସ କରେ ଚିତ୍‌ବ୍ରହ୍ମ ରୂପେ । ସମସ୍ତ ଭଲ ମନ୍ଦଗୁଣ ସେ ଦାନ କରିଛି ପ୍ରତ୍ୟେକଙ୍କୁ । ଅବଶେଷରେ ସବୁ ମିଶେ ତାରି ଦେହରେ । ମୁଁ ମୋ ହୃଦୟକୁ ଶ୍ମଶାନବତ୍ କରିଛି । ଏହି ହୃଦଶ୍ମଶାନରେ କାମ, ରାଗାଦି ରିପୁମାନେ ଦଗ୍‌ଧୀଭୂତ ହୋଇଛନ୍ତି । ସାଧକ ମାନେ ହିଁ ହୃଦକୁ ଶ୍ମଶାନରେ ପରିଣତ କରିଥାନ୍ତି । ତାହା ନ ହେଲେ ଚିତ୍‌ବ୍ରହ୍ମ ସ୍ୱରୂପା ଦେବୀଙ୍କ ଆରାଧନା ସେ କରି ପାରିବେ ନାହିଁ । ଦଗ୍‌ଧୀଭୂତ ପଞ୍ଚଭୂତର ଚିତାଭସ୍ମ ଅଙ୍ଗେ ବିଲେପନ କରି ପ୍ରଜ୍ୱଳିତ ଚିତା ବ୍ରହ୍ମ (ଚିତ୍‌ବ୍ରହ୍ମ) ପାର୍ଶ୍ୱେ ମୁଁ ତାରି ଧ୍ୟାନରେ ରତ ଥାଏ, ଗତ, ଭବିଷ୍ୟତ, ବର୍ତ୍ତମାନର ବିଷୟ ତାରି ଅନ୍ଧକାର ଗହ୍ୱରରୁ ଜ୍ଞାତ ହେବାକୁ ।

ସର୍ବ ଶକ୍ତିହୀନ ଏବଂ ସର୍ବ ଶକ୍ତିମାନ୍ । ପ୍ରତ୍ୟକ୍ଷ ତାଙ୍କ ଶକ୍ତିରେ ଶକ୍ତିବାନ୍ ଏବଂ ସମସ୍ତଙ୍କଠାରୁ ସେ କ୍ଷୀଣ ହରଣ କରେ ସବୁ ଶକ୍ତି । ତେଣୁ ତାଙ୍କ କଟିଦେଶେ ଶକ୍ତିର ସନ୍ଦପ୍ରକାଶ ସ୍ୱରୂପ ହସ୍ତ ଗୁଚ୍ଛ ଶୋଭିତ । ସେ ସଂସାରର କ୍ଷୁଧା ତୃଷ୍ଣା ହାରୀ । ତାଙ୍କ ପୀନୋନ୍ନତ କ୍ଷରିତ ଦୁଗ୍ଧ ରୂପୀ ଅମୃତ ବା ଜ୍ଞାନ ଅମୃତତ୍ତ୍ୱ ପ୍ରାପ୍ତି ନିମନ୍ତେ ନିଷ୍କାମ ସାଧକ ଉଦ୍ଦେଶ୍ୟ ବକ୍ଷଦେଶେ ଶୋଭିତ । ତାଙ୍କ ଅନାବୃତ ପୟୋଧରରୁ କ୍ଷରିତ ଜ୍ଞାନ ସୁଧା ପାନ କରି ମୁନି ଋଷିମାନେ ତଥା ମୁଁ ମଧ୍ୟ ସେହି ଜ୍ଞାନ ସୁଧାର ମହାତ୍ମ୍ୟ ଯୁଗେ ଯୁଗେ ବର୍ଣ୍ଣନା କରି ଆସୁଛୁ ଓ ଆସିଛୁ ।

ଊର୍ଦ୍ଧ୍ୱ ବାମହସ୍ତ ଜ୍ଞାନ ଖଡ୍ଗ ଦ୍ୱାରା ବାମମାର୍ଗ ଉପାସକ ବା ନିଷ୍କାମ ସାଧକର ମୋହ ବା ମାୟା କର୍ତ୍ତନ ନିମିତ୍ତ ଉଦ୍ଦିଷ୍ଟ ସେ ସ୍ୱୀୟ ମାୟାଶକ୍ତିଦ୍ୱାରା ତ୍ରିକ୍ରିୟା ଅର୍ଥାତ୍—ସୃଷ୍ଟି,ସ୍ଥିତି,ସଂହାର କରନ୍ତି । ବାମହସ୍ତର ନିମ୍ନ ହସ୍ତରୁ ଚକ୍ଷୁର ଆଧାର ଜ୍ଞାନ ରୂପୀ ମସ୍ତକରୁ ରକ୍ତ ନିମ୍ନଗାମୀ ହୋଇ ସ୍ରବୁଛି । ଦକ୍ଷିଣର ହସ୍ତର ଊର୍ଦ୍ଧ୍ୱ ହସ୍ତ ଶରଣାପନ୍ନ ସନ୍ତୁଜନଙ୍କୁ ଅଭୟ ଦାନ ରତ ଏବଂ ନିମ୍ନହସ୍ତ ନିଷ୍କାମ ସାଧକମାନଙ୍କ ନିମିତ୍ତ ବରଦାନ ରତ । ସତ୍ତ୍ୱଗୁଣ ସୂଚକ ଶୁକ୍ଳ ଦଶନ ପଂକ୍ତି ଦ୍ୱାରା ରଜୋଗୁଣ ସୂଚକ ରକ୍ତ ବର୍ଣ୍ଣା ଲେଲିହାନ ରସନା ସୁନ୍ଦରରୂପେ ଆବୃତ ହୋଇଛି ।

ଶିବଙ୍କ କଥା ଶ୍ରବଣ କରି ନାରଦ ଅନୁଭବ କଲେ ଶକ୍ତି ଓ ଶକ୍ତିବାନ୍ ଅଭିନ୍ନ । ଶକ୍ତି ଯୁକ୍ତ ହୋଇ ଶବ ଶିବ ଆଖ୍ୟା ପ୍ରାପ୍ତ ହୁଏ । ବ୍ୟକ୍ତିର କ୍ରିୟାଶୀଳ ଅବସ୍ଥାକୁ ଶକ୍ତି ବୋଲି ଗ୍ରହଣ କରାଯିବା ଆଦୌ ଅପ୍ରାସଙ୍ଗିକ ନୁହେଁ । ବସ୍ତୁ ଯେପରି ଶକ୍ତିବାନ ଏକ ଅଂଶେ ନିଷ୍କ୍ରିୟ ହେଲେ ମଧ୍ୟ ଅପର ଅଂଶେ କ୍ରିୟାଶୀଳ ଥାଏ । ତେଣୁ ନିଷ୍କ୍ରିୟ ଶିବଙ୍କ ବକ୍ଷଦେଶେ କ୍ରିୟାଶୀଳ ଜନନୀ କାଳିକାଙ୍କ ସ୍ଥିତି ଏବଂ ଲୀଳା ସର୍ବଥା ବାଞ୍ଛନୀୟ ।

ଲୌକିକ ଜଗତ ନିଦ୍ରାଭୂତ ହୁଅନ୍ତି । ସେହି ନିଦ୍ରିତ ଅବସ୍ଥାରେ ଦେହ ଇନ୍ଦ୍ରିୟବର୍ଗ ନିଷ୍କ୍ରିୟ ଥିଲେ ମଧ୍ୟ ବିଭିନ୍ନ ସ୍ୱପ୍ନଦୃଷ୍ଟ ହୁଏ । ଯେତେବେଳେ ଚେତନାଶକ୍ତି ଅନେକ ପରିମାଣରେ ନିଷ୍କ୍ରିୟ ଥିଲେ ବି ବିଭିନ୍ନ ଦୁଃସ୍ୱପ୍ନ ପରିଦୃଷ୍ଟ ହୋଇ ଭୟ ବିଜଡ଼ିତ କଣ୍ଠରେ ଚିତ୍କାର କରନ୍ତି ଏବଂ ବହୁ ସୁଖ ସ୍ୱପ୍ନମୁଖ ଦେଶରେ ହାସ୍ୟର ଉଦ୍ରେକ ଆଣିଥାଏ । ବ୍ୟକ୍ତି ନିଷ୍କ୍ରିୟ, ନିଶ୍ଚଳ, ଶାନ୍ତ ଥିଲେ ମଧ୍ୟ କ୍ରିୟାଶୀଳ ଗତିଶୀଳ ମନ,

ବ୍ୟକ୍ତିକୁ ଆଶ୍ରୟ କରି ଚାଲିଥାଏ । ଏହା ହିଁ ଯଦି ହେବ ଜଗତ ପକ୍ଷେ ସମ୍ଭବ ହୋଇପାରେ ତାହାହେଲେ ଅନନ୍ତ ଶକ୍ତିର ଆଧାର ଶିବ ନିଷ୍କ୍ରିୟ ହେଲେ ମଧ୍ୟ କ୍ରିୟାଶୀଳା ଶକ୍ତି ସେ ତା କାର୍ଯ୍ୟରେ ବିରତ ହେବ କାହିଁକି ?

ସୂକ୍ଷ୍ମ ଦର୍ଶନ ତତ୍ତ୍ୱଆଡ଼େ ଦୃଷ୍ଟି ଅନେକ କରି ନାରଦ ଦୃଶ୍ୟମାନ ହେଲେ ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ଜଣେ ନିର୍ଲିପ୍ତ ଦ୍ରଷ୍ଟା ପୁରୁଷ ଅଛି । ଯାହାକୁ କି ଆଶ୍ରୟ କରି ବହୁ ଶକ୍ତିର କ୍ରିୟା ହୋଇ ଆସୁଛି । ବାଲ୍ୟକାଳେ କଏ କପରି ଥିଲା ଏବଂ କଣ ସେ କରିଆସିଛି ତାହା ବୟଃପ୍ରାପ୍ତି ପରେ ମଧ୍ୟ ସ୍ମରଣ ଥାଏ । ଏହି ସ୍ମୃତି ସେହି ନିର୍ଲିପ୍ତ ଦ୍ରଷ୍ଟା ପୁରୁଷ ମଧ୍ୟେ ରହିଥାଏ । ଯେତେବେଳେ ଘଟଣା ଘଟେ ସେତେବେଳେ ବ୍ୟକ୍ତିର ମନେହୁଏ ଅନ୍ତରର ଦ୍ରଷ୍ଟା ପୁରୁଷ ଘଟଣା ସହିତ ଅଙ୍ଗାଅଙ୍ଗୀ ଜଡ଼ିତ । କିନ୍ତୁ ପରେ ଜଣାପଡ଼େ ସୁଖ ଦୁଃଖରେ କେବଳ ସେ ନିଜେ ଆନନ୍ଦିତ ଓ ଦୁଃଖିତ ହୋଇଥିଲା । ଦ୍ରଷ୍ଟା ପୁରୁଷର ତହିଁରେ କୌଣସି ସମ୍ପର୍କ ନ ଥିଲା । ଦ୍ରଷ୍ଟା ପୁରୁଷ କେବଳ ସାକ୍ଷୀ ରୂପେ ବିଦ୍ୟମାନ ଶବରୂପୀ ଶିବଙ୍କୁ ନାରଦ ଦ୍ରଷ୍ଟା ପୁରୁଷ ବୋଲି ଭାବି ତାଙ୍କର କ୍ରିୟାଶୀଳା ଅବସ୍ଥାକୁ ଶକ୍ତି ବୋଲି ଧାରଣା କଲେ । ଦ୍ରଷ୍ଟାକୁ ବାଦଦେଇ ଶକ୍ତି କଣ ବା କରିପାରିବ ? ଆଉ ମଧ୍ୟ ଶକ୍ତିକୁ ବାଦଦେଲେ ଦ୍ରଷ୍ଟା ପୁରୁଷକୁ କଣ କେହି ଅବଲୋକନ କରିପାରେ ?

ନାରଦ ସନ୍ଦିଗ୍ଧ ମନରେ ଶିବଙ୍କ ଆଡ଼େ ଅନାଇଲେ ।

ତ୍ରିକାଳଦର୍ଶୀ ଶିବ ମୃଦୁହାସ୍ୟ ମୁଖରେ ଖେଳାଇ କହିଲେ, "ଶିବ, ଶକ୍ତି ଅଭିନ୍ନ ନାରଦ ! ଶକ୍ତିହୀନ ଶିବର ବିଶ୍ୱପକ୍ଷେ ଆବଶ୍ୟକତା କଣ ଅଛି ? ସେହି ଶକ୍ତିର ମାଧ୍ୟମରେ ମୁଁ 'ଶିବ' ପଦବାଚ୍ୟ ହୋଇଛି । ଯେତେବେଳେ ଶକ୍ତି ମୋଠାରୁ ପୃଥକ ହୋଇଯିବ ସେତେବେଳେ ମୁଁ 'ଶବ' ନାମେ ଅଭିହିତ ହେବି । ଶକ୍ତିରୂପିଣୀ ଏହି 'ମା' କାଳିକାଙ୍କ ଅନନ୍ତ ଗର୍ଭରେ ବିଶ୍ୱର, ଅନନ୍ତ ଜୀବର ଭୂତ ଭବିଷ୍ୟତ ବର୍ତ୍ତମାନ ନିହିତ ଅଛି । ବିଶ୍ୱର କାରଣ ଓ ସୂକ୍ଷ୍ମବୀଜାଧାର ଏହି ଶକ୍ତିର ସମସ୍ତ ଶକ୍ତିକୁ ସ୍ୱୀୟଶକ୍ତି ରୂପେ ପ୍ରତିପାଦିତ କରି ଅବସ୍ଥାନ କରିଛନ୍ତି । ଅସଂଖ୍ୟ ସୂକ୍ଷ୍ମବୀଜ ମଧ୍ୟେ ପ୍ରତ୍ୟେକ ବୀଜର ସ୍ୱତନ୍ତ୍ର ବୀଜ ରହିଛି ତାହାହିଁ ତାର ଶକ୍ତି । ସେହି ଶକ୍ତି

ଅସ୍ତବଟରେ ପୁରୁଷ ଶ୍ରୀକୃଷ୍ଣ ନିଜର ବ୍ୟର୍ଥତାରେ ପର୍ଯ୍ୟବେସିତ ହୁଏ ନାରଦ ! ଶନିର ମନ୍ଦଦୃଷ୍ଟିରୁ ରକ୍ଷା ପାଇବାକୁ ଦକ୍ଷିଣ କାଳୀର ପୂଜା ଉପାସନା ସର୍ବାଦୌ କର୍ତ୍ତବ୍ୟ ।

ନାରଦ ଯୁକ୍ତକର ହୋଇ ସ୍ୱହୃଦୟରେ ଦେବୀଙ୍କୁ ଦୃଶ୍ୟମାନ ଦେଖଲେ । ଶିବ ଗାଇଉଠିଲେ—

ଓଁ କରାଳ ବଦନାଂ ଘୋରାଂ ମୁକ୍ତକେଶୀଂ ଚତୁର୍ଭୁଜାଂ ।
କାଳିକାଂ ଦକ୍ଷିଣାଂ ଦିବ୍ୟା ମୁଣ୍ଡମାଳା ବିଭୂଷିତାଂ ॥
ସଦ୍ୟଶ୍ଛିନ୍ନ ଶିରଃ ଖଡ୍‌ଗ ବାମାଧୋର୍ଦ୍ଧ କରାମ୍ବୁଜାଂ ।
ଅଭୟଂ ବରଦ ଚୈବ ଦକ୍ଷିଣାଧୋର୍ଦ୍ଧ ପାଣିକାଂ ॥
ମହାମେଘ ପ୍ରଭାଂ ଶ୍ୟାମାଂ ତଥାଚୈବ ଦିଗମ୍ବରାଂ ।
କଣ୍ଠାବସକ୍ତ ମୁଣ୍ଡାଳୀ ଗଳଦ୍ରୁଧିର ଚର୍ଚ୍ଚିତାଂ ॥
କର୍ଣ୍ଣାବତଂ ସତାନୀତ ଶବଯୁଗ୍ମ ଭୟାନକାଂ ।
ଘୋର ଦଂଷ୍ଟ୍ରାଂ କରାଳାସ୍ୟାଂ ପୀନୋନ୍ନତ ପୟୋଧରାଂ ॥
ଶବାନାଂ କର ସଂଘାତୈଃ କୃତକାଞ୍ଚୀ ହସନ୍ମୁଖୀଂ ।
ସୃକ୍କଦ୍ୱୟ ଗଳଦ୍ରକ୍ତଧାରା ବିସ୍ଫୁରିତାନନାଂ ॥
ଘୋରରାବାଂ ମହାରୌଦ୍ରୀଂ ଶ୍ମଶାନାଳୟ ବାସିନୀଂ ।
ବାଳାର୍କ ମଣ୍ଡଳାକାର ଲୋଚନ ତ୍ରିତୟାନ୍ୱିତାଂ ॥
ଦନ୍ତୁରାଂ ଦକ୍ଷିଣବ୍ୟାପି ମୁକ୍ତାଲମ୍ବି କଚୋଚ୍ଚୟାଂ ।
ଶବ ରୂପ ମହାଦେବ ହୃଦୟୋପରି ସଂସ୍ଥିତାଂ ॥
ଶିବାଭିର୍ଘୋରରାବାଭିଶ୍ଚତୁର୍ଦ୍ଦିକ୍ଷୁ ସମନ୍ୱିତାଂ ।
ମହାକାଳେନ ଚ ସମଂ ବିପରୀତରତାତୁରାଂ ।
ସୁଖ ପ୍ରସନ୍ନବଦନାଂ ସ୍ମେରାନନସରୋରୁହାମ୍ ।
ଏବଂ ସଂଚିନ୍ତୟେତ୍‌କାଳୀଂ ସର୍ବକାମ ସମୃଦ୍ଧିଦାମ ॥

ନାରଦ ମନ୍ତ୍ରମୁଗ୍‌ଧ ଭଳି ଶନଗ୍ରହସ୍ଥିତ ଦେବୀ କାଳିକାଙ୍କୁ ଏବଂ ଧ୍ୟାନ ପାଠରତ ଶିବଙ୍କୁ ଚାହିଁ ଥାଆନ୍ତି । ହୃଦୟର ପ୍ରତ୍ୟେକ ତନ୍ତ୍ରୀରେ ସେ ଅନୁଭବ କରୁଥାଆନ୍ତି ଅଭିନବ ପୁଲକ । ସତୀ ବିଚ୍ଛେଦ ଅଧୀର ଶିବଙ୍କର ପରିବର୍ତ୍ତନ ଏତେ ଶୀଘ୍ର ଆସିବ ସେ ତାହା ଆଶାକରି ନଥିଲେ । ମାତୃରୂପୀ କାଳିକା ପୁନ ସତୀ ରୂପଧରି ଜନ୍ମ ନେଇଥିଲେ ଶିବଙ୍କୁ ବିବାହ

କରିବାକୁ ଏହା ତାଙ୍କ ମନଭିତରେ ଆନ୍ଦୋଳନ ସୃଷ୍ଟି କରୁଥାଏ । ପୁନର୍ବାର ଦେବାଧିଦେବ ମହାଦେବ ଗାଇଉଠିଲେ—

ଶବାରୂଢ଼ାଂ ମହାଭୀମାଂ ଘୋରଦଂଷ୍ଟ୍ରା ବରପ୍ରଦାମ୍
ହାସ୍ୟ ଯୁକ୍ତାଂ ତ୍ରିନେତ୍ରାଂ ଚ କପାଳକର୍ତ୍ତ୍ରିକା କରାମ୍ ।।
ମୁକ୍ତ କେଶୀଂ ଲେଲଜିହ୍ୱାଂ ପିବନ୍ତୀଂ ରୁଧିର ମୁହୁଃ
ଚତୁର୍ବାହୁଯୁତାଂ ଦେବୀଂ ବରାଭୟକରାଂ ସ୍ମରେତ୍ ।।

ଶିବ ମହାକାଳିକା ଦେବୀଙ୍କୁ 'ହ୍ରୀଂ ଓଁ ହ୍ରୀଂ କାଳିକାୟୈ ନମଃ' କହି ପ୍ରଣାମ କଲେ । ଭକ୍ତ ବତ୍ସଳ ଶିବଙ୍କ ପ୍ରଣିପାତ ଲକ୍ଷ୍ୟକରି ନାରଦ ଯୁକ୍ତକର ହୋଇ ପ୍ରଣାମ ଜଣାଇଲେ । ଏହି ଦେବୀ ବାକ୍ ଶକ୍ତି ଦାନ କରିବା ହେତୁ "ନୀଳ ସରସ୍ୱତୀ" ନାମେ ବିଖ୍ୟାତ । ଏହାଙ୍କୁ କବିତ୍ୱ ପ୍ରକାଶ ପାଇଁ ଆରାଧନା କରାଯାଏ । ଏ ସର୍ବାର୍ଥ ମୋକ୍ଷ ଦାୟିନୀ ।

ନାରଦ ଅନୁଭବ କଲେ ଶିବଙ୍କ ଭକ୍ତି କେତେ ବାସ୍ତବ କେତେ ଉଚ୍ଚ ସ୍ତରର । ତାଙ୍କ ଭକ୍ତି ସହିତ ନିଜ ଆକାଂକ୍ଷାକୁ ସେ ତୁଳନା କରି ନିଜକୁ ଅତି ନ୍ୟୂନ ମନେକଲେ । ତାଙ୍କର ମୃଗପରି ଚଞ୍ଚଳ ମନ ଅପେକ୍ଷା ଯୋଗାରୂଢ ଏକ ନିଷ୍ଠ ଶିବଙ୍କ ମନର ଗଭୀରତା ସେ ହୃଦୟଙ୍ଗମ କଲେ । ସେ ଫେରି ଆସିଲେ ଚେତନା ବର୍ତ୍ତ ଦର୍ଶନ ମଧ୍ୟକୁ । ସବୁ ତାର ଇଚ୍ଛା । ସେ କରନ୍ତି ଶିବଙ୍କୁ ଶିବ ପଦବାଚ୍ୟ । ସେ କରନ୍ତି ପୁଣି ତାଙ୍କୁ ନାରଦ ପଦବାଚ୍ୟ । ସେ ପୁନର୍ବାର ସେହି ଅନାଦି ପରମା ପ୍ରକୃତିଙ୍କୁ ନମସ୍କାର ଜଣାଇବା ଉଦ୍ଦେଶ୍ୟେ ଆକାଶ ମାର୍ଗକୁ ଲକ୍ଷ୍ୟକରି ଆଶ୍ଚର୍ଯ୍ୟ ହେଲେ । ଏ କଣ ଆକାଶ ମାର୍ଗରେ ଶନିଗ୍ରହ ନାହିଁ କିମ୍ବା ଦେବୀ କାଳିକା ନାହାନ୍ତି । ଠିକ୍ ଏତିକି ବେଳେ ଶିବ କହି ଉଠିଲେ ହେଇ ନାରଦ ! ଲକ୍ଷ୍ୟକରି ଦେଖ ବୃହସ୍ପତି ଗ୍ରହରେ ମାତୃ ରୂପିଣୀ ଦେବୀ ତାରାଙ୍କୁ ।

ନାରଦ ଆକାଶ ମାର୍ଗରେ ବୃହସ୍ପତିଙ୍କୁ ନିରୀକ୍ଷଣ କଲେ । ବହୁ ଦୂରେ ଦୃଶ୍ୟମାନ ବୃହସ୍ପତିଙ୍କ ସ୍ୱର୍ଣ୍ଣାଲୋକକୁ ଅବରୋଧ କରି ଦଣ୍ଡାୟମାନ ଏକ କୃଷ୍ଣବର୍ଣ୍ଣା ଭୟଙ୍କର ମୂର୍ତ୍ତି । ଶବ ଉପରେ ବାମପାଦ ବିନ୍ୟସ୍ତ କରି ବା ପ୍ରତ୍ୟାଳୀଢ଼ ପଦା ହୋଇ ଦଣ୍ଡାୟମାନ ଦେବୀ ତାରା । ସେ ଲମ୍ବୋଦରା, ଖର୍ବା ଓ ଭୟଙ୍କରା କୃତି । ତାଙ୍କ କଣ୍ଠଦେଶେ ନରମୁଣ୍ଡ ରଚିତ ମାଳା, କଟି ସ୍ଥଳେ ବ୍ୟାଘ୍ରଚର୍ମ ବୃତ୍ତ । ପଞ୍ଚମୁଦ୍ରା ଅଳଂକୃତା ଚତୁର୍ଭୁଜ ଧାରିଣୀ

ଦେବୀ ନବ ଯୁବତୀ ରୂପେ ନୈଳକଲ୍ପା ବରିଷ୍ଠା ହୋଇ ଭୟଙ୍କର ରୂପଧାରୀ ରସୁ ହାସ୍ୟକରି ଶରଣାଗତଙ୍କୁ ବରଦାନ କରୁଛନ୍ତି । ମସ୍ତକେ ଏକ ପିଙ୍ଗଳବର୍ଣ୍ଣ ଜଟା, କର୍ଣ୍ଣେଳ ଦେଶେ ନାଗରୂପୀ ଅକ୍ଷୋଭ୍ୟ ବା ଦୀପ୍ତିମାନ ଭୂଷଣ, ନବୋଦିତ ସୂର୍ଯ୍ୟମଣ୍ଡଳ ସମ ଦେହ କାନ୍ତି, ତ୍ରିନେତ୍ରା, ପ୍ରଜ୍ଜ୍ୱଳିତ ଚିତା ମଧ୍ୟେ ଦେବୀ ବିରାଜମାନ । ଏହି ଘୋଷଣାକୃତି ଦେବୀଙ୍କର ଦନ୍ତପଂକ୍ତି ଅତି ଭୟଙ୍କର । ସେ ସ୍ମିତ ଆବେଶେ ହାସ୍ୟ ବଦନା, ସୌଖୀନ ରମଣୀଙ୍କ ସମ ବିବିଧ ଭୂଷଣେ ଭୂଷିତା ଏବଂ ବିଶ୍ୱ ବ୍ୟାପକ ଜଳ ମଧ୍ୟେ ଶ୍ୱେତ ପଦ୍ମ ପ୍ରାପ୍ତ ବିରାଜମାନ । ଦକ୍ଷିଣ କରରେ ଇନ୍ଦୀବର ଓ ଖର୍ପର ଏବଂ ବାମକର ଦ୍ୱୟରେ ଖଡ୍ଗ ଏବଂ କାତି ସୁଶୋଭିତା ମା'ର ଖର୍ବାକୃତି ଭୟଙ୍କର ରୂପ ଦର୍ଶନ କରି ଦେବର୍ଷୀ ନାରଦ ବାକ୍‌ଶକ୍ତି ବିହୀନ ହୋଇ ପଡ଼ିଲେ । ସୃଷ୍ଟି, ସ୍ଥିତି, ପ୍ରଳୟାଧିକାରୀ 'ମା' ଏକ ଭୟଙ୍କର ମୂର୍ତ୍ତି ଧାରଣ କରି ଗୁରୁ ବୃହସ୍ପତିଙ୍କ ଇଚ୍ଛା ଶକ୍ତିକୁ ବୋଧକରି ଦଣ୍ଡାୟମାନ ହୋଇଛନ୍ତି । ଦକ୍ଷିଣ କାଳିକାଙ୍କ ସ୍ୱରୂପ ଭଳି ତାଙ୍କ ରୂପକାନ୍ତି ହେଲେ ମଧ୍ୟ କାଳିକାଙ୍କଠାରୁ ଅନେକ ତଫାତ ଅନେକ ଭୟଙ୍କର ।

ଶିବ ମନ୍ତ୍ରମୁଗ୍ଧ ଭଳି ସେହି ମୂର୍ତ୍ତିକୁ ଲକ୍ଷ୍ୟକରି ନାରଦଙ୍କୁ ସମ୍ବୋଧନ କରି କହିଲେ, 'ମା'ର ଏ ରୂପ ଦର୍ଶନ କରି କିଛି ବୁଝିପାରୁଛ ନାରଦ । ଏହି ଅନନ୍ତ ଆକାଶ ବକ୍ଷେ ଯେପରି ଅସଂଖ୍ୟ ନକ୍ଷତ୍ର ପୁଞ୍ଜ ବିରାଜମାନ । ସେହିଭଳି ଅନନ୍ତ କାଳ ବକ୍ଷେ ଅସଂଖ୍ୟ ଜୀବଜଗତ ବିଦ୍ୟମାନ ଅନନ୍ତ ମଧ୍ୟେ ଯେ ଶାନ୍ତ—ଆଧିକ୍ୟ, ତାହାହିଁ ତାର ଶକ୍ତି । ତାରା ଅଖଣ୍ଡକୁ ଖଣ୍ଡ ଖଣ୍ଡ କରିଦିଏ । ଅନନ୍ତ କାଳ—ବାର, ତିଥି, ନକ୍ଷତ୍ର ପ୍ରଭୃତି ବିଭକ୍ତ ହେଲେ ଏହି ତାରା ଶକ୍ତି ପ୍ରଭାବେ ସେଥିପାଇଁ ଦେବୀ ତାରା ଦିଗମ୍ବରା ନୁହନ୍ତି, ଉଲଗ୍ନା ମଧ୍ୟ ନୁହନ୍ତି । ସେ ଆବୃତା, ଖର୍ବାକୃତି ଏବଂ ନୃତ୍ୟ ରତା । ତାର ଗତି ସୃଷ୍ଟି ମୁଖୀ । ତେଣୁ ତାର ବାମଚରଣ ଶବ ହୃଦୟେ ସ୍ଥିତ । ଶକ୍ତିର ବାମ ଦିଗେ ଗତି ହେଲେ ଭୋଗାଭିମୁଖୀ ଏବଂ ଦକ୍ଷିଣ ଦିଗେ ଗତି ହେଲେ ଅପବର୍ଗାଭିମୁଖୀର ନିଦର୍ଶନ । ଯେଉଁ ଶକ୍ତି ପ୍ରେରଣାରେ ଲୋକଜଗତ ଜୀବବୋଧର ଖଣ୍ଡ ଚେତନା ପ୍ରାପ୍ତ ହେଲେ, ସେହିଁ ତାରା ଶକ୍ତି । ଅଖଣ୍ଡ କାଳ ବକ୍ଷକୁ ଖଣ୍ଡ ଖଣ୍ଡ କରି ଯେ ଲୋକଜଗତର ଚେତନା ଜାଗୃତ କଲ ସେ ସେହିଁ ତାରା

ଶକ୍ତି । ଏହି ତାରା ଶକ୍ତି ପ୍ରଭାବେ ଜୀବଜନ୍ତୁର ଉନ୍ମେଷ, ତଥା ଜଗତର ଉନ୍ମେଷ ହୁଏ ।

ଭାଗ୍ୟବଶେ ଯେତେବେଳେ ସାଧକ ନିବୃତ୍ତିମୁଖୀ, ବଳେମଗତ ପ୍ରାପ୍ତ ହୋଇ ଏହି ଶକ୍ତି ତତ୍ତ୍ୱେ ପ୍ରବେଶ କରେ ବା 'ଶକ୍ତି' ସାଧନା ପାଇଁ ବ୍ୟାକୁଳ ହୋଇ ଉଠେ, ସେତେବେଳେ ତା'ର ସାଂସାରିକ ଅବସ୍ଥା ବା ପାରିପାର୍ଶ୍ୱିକ ଅବସ୍ଥା ତମୋଗୁଣମୟ ହେଲେ ମଧ୍ୟ ତାହାର ଅନ୍ତରର ସତ୍ତ୍ୱ ଗୁଣର କ୍ଷୀଣ ସମାବେଶ ହୁଏ, ଠିକ୍ ସେତିକି ବେଳେ ମହାମାୟାଙ୍କର ଜାଗତିକ ମାୟା ପ୍ରପଞ୍ଚ ଠାରୁ ମୁକ୍ତି ଲାଭ କରିବାପାଇଁ ଚିନ୍ତା ତଥା ଚେଷ୍ଟା କରିବାକୁ ହୁଏ । ଏହି ରୂପେ ବହିର୍ମୁଖୀ ପୂର୍ଣ୍ଣ ପ୍ରକଟିତ ତମୋଗୁଣର ଲଘୁତାର ଏବଂ ଅନ୍ତର୍ମୁଖୀ ସତ୍ତ୍ୱଗୁଣର ସମାବେଶରେ ସାଧକ ଜୀବନ, ମାତୃ କୃପାର ଅଭାବମୟ ରୂପେ ଆଧ୍ୟାତ୍ମିକର ଉନ୍ନତି ଲାଭ ହୋଇଥାଏ ।

ଦେବୀ ତାରା ଜ୍ୱଳନ୍ତ ଚିତା ମଧ୍ୟେ ଦୃଶ୍ୟମାନ । ମହାଭାବ ହେବା ମାତ୍ରେ ବ୍ୟକ୍ତି ବିଶେଷ ମୃତ୍ୟୁର ଅଧିନ—ଶ୍ମଶାନର ଅଧୀନ ହୁଏ । ତେଣୁ ଦେବୀ ତାରା ଚିତା ମଧ୍ୟେ ବିରାଜମାନା । ଜନ୍ମ ହେଲେ ମୃତ୍ୟୁ ନିଶ୍ଚୟ ଏବଂ ମୃତ୍ୟୁପରେ ଆକାଂକ୍ଷୀତ ଆତ୍ମା ଜନ୍ମ ନିଏ । ପ୍ରକାଶ ଶକ୍ତି—ସମସ୍ତ ଜୀବ ଚେତନାର ଉନ୍ମେଷ ହୁଏ । ଦିବସରେ ନକ୍ଷତ୍ର ପୁଞ୍ଜ ଦୃଶ୍ୟମାନ ହୁଅନ୍ତି ନାହିଁ, ଠିକ୍ ସେହିପରି କାଳୀଶକ୍ତିର ବିଦ୍ୟମାନେ ସୂକ୍ଷ୍ମ—ସଂଷ୍ଟିଭାବ ଅଦୃଶ୍ୟ ହୁଏ । ମାତ୍ର ଚନ୍ଦ୍ରାଲୋକେ ନକ୍ଷତ୍ର ପୁଞ୍ଜ ଦୃଶ୍ୟମାନ ହୁଅନ୍ତି । ତାରା ଶକ୍ତିର ପ୍ରକାଶ କାଳୀ ଶକ୍ତି ଠାରୁ ମ୍ଲାନ । ତେଣୁ ସୂକ୍ଷ୍ମ ଜୀବ ବୋଧ ଅନୁଭବଗମ ବେଶୀ ତାରା ଶକ୍ତି ଠାରେ । ଚିତା—ମ୍ଲାନ ପ୍ରକାଶ ଶକ୍ତି । ସେଥିପାଇଁ ତାରା ଦେବୀ—ସୂକ୍ଷ୍ମ ଜୀବ ଚୈତନ୍ୟର ପର ପ୍ରକାଶ । ଜୀବଜଗତକୁ ଭବ ସାଗରରୁ ଉଦ୍ଧାର କରିବା ହେତୁ ଏହାଙ୍କୁ ତାରା ନାମେ ଅଭିହିତ କରାହୁଏ । ଭୀଷଣ ବିପଦଠାରୁ ଉଦ୍ଧାର କରନ୍ତି ବୋଲି ଉଗ୍ରତାରା କୁହାଯାଏ ।

ଶିବ କହିଲେ ଏହି ମହାକାଳିଙ୍କୁ ତୁମେ ମୂର୍ତ୍ତିରୂପେ ଦର୍ଶନ କରିବ ପୁରୁଷୋତ୍ତମ କ୍ଷେତ୍ରରେ । ସେ ସେଠାରେ ଶ୍ୟାମାକାଳୀ ରୂପେ ପୂଜା ପାଇବେ । ପୁରୁଷୋତ୍ତମ କ୍ଷେତ୍ରହିଁ ତନ୍ତ୍ରର ମହାନ୍ ପୀଠ । ବେଦର

ବହୁ ପୂର୍ବରୁ ବେଦର୍ ପୁରୁଷ, ତନ୍ତ୍ରର ଶକ୍ତି ସେଠାରେ ବିଦ୍ୟମାନ। ସମସ୍ତ ଦେବତା ସେଥିପାଇଁ ସେଠାରେ ବାସ କରି ଆସୁଛନ୍ତି।

ବାମହସ୍ତ ସ୍ଥିତ ଖଡ଼ଗ ଏବଂ କଟାରି ରଜ ଏବଂ ତମୋଗୁଣ ନାଶ ଧ୍ୱଂସାର୍ଥେ ଶୋଭିତ। ଦକ୍ଷିଣ ହସ୍ତରେ ସତ୍ତ୍ୱର ଚିହ୍ନ ସ୍ୱରୂପ ଇନ୍ଦୀବର ଏବଂ ଅମୃତ ପୂର୍ଣ୍ଣ ପାତ୍ର ଧାରଣ କରିଛନ୍ତି ଜ୍ଞାନଦାତ୍ରୀ ମା'ର ଲମ୍ବୋଦରେ ପରିପୂର୍ଣ୍ଣ ଜ୍ଞାନ ଭଣ୍ଡାରର ଦ୍ୟୋତକ। ପଚିଶ ପ୍ରକୃତିର ନିଦର୍ଶନ ସ୍ୱରୂପ ପଞ୍ଚବିଂଶ ନରକପାଳ ଶୋଭିତ ଗଳ ଦେଶେ। କାଳିକାଙ୍କ ପରି ସତ୍ତ୍ୱଗୁଣର ନିଦର୍ଶନ ଶୁକ୍ଳବର୍ଣ୍ଣ ଦନ୍ତାବଳୀ ଅଂକ୍ରିଦାରି ରଜପୂର୍ଣ ଦ୍ୟୋତକ ରକ୍ତବର୍ଣ୍ଣ ଜିହ୍ୱା ସୁଦ୍ଧରୂ ରୂପ ଆସୃତ। ନେତ୍ରଦ୍ୱୟ ସୃଷ୍ଟି ରକ୍ଷାର୍ଥେ ଅର୍ଦ୍ଧନିମିଳିତ। ଏହି ମହାଶକ୍ତି ମହାବିଦ୍ୟା ତାରା ବୃହସ୍ପତି ମହାଗ୍ରହର ସମସ୍ତ ମନ୍ଦପ୍ରଭାବ ନିବାରଣାର୍ଥେ ବୃହସ୍ପତି ଗ୍ରହରେ ସ୍ଥିତ। ତେଣୁ ଲୋକେ ଜଗତ ବୃହସ୍ପତି ଗ୍ରହର କୋପ ଦୃଷ୍ଟିରୁ ଉଦ୍ଧାର ପାଇବାକୁ ଦେବୀ ତାରାଙ୍କର ଆରାଧନା କରିବା ଆବଶ୍ୟକ। ଉତ୍କଳର ଶ୍ୱେତହ୍ରଦ କୂଳରେ ସେ ଉଗ୍ରତାରା ରୂପେ ଆରାଧିତା ହେବେ।

ନାରଦ ବୃହସ୍ପତି ଗ୍ରହସ୍ଥିତ ଦେବୀ ତାରାଙ୍କୁ ପୁନଃ ପୁନଃ ଦର୍ଶନ କରି ଶିବଙ୍କଠାରୁ ଶ୍ରୁତ ତାରାଙ୍କ ରୂପର ମହତ୍ତ୍ୱ ଉପଲବ୍ଧି କଲେ। ନାରଦ କିଛି କହିବା ପୂର୍ବରୁ ମହାଦେବ ସ୍ତୁତି କରି ହୋଇ ଗାଇଉଠିଲେ—

ପ୍ରତ୍ୟାଳୀଢ଼ପଦାଂ ଘୋରାଂ ମୁଣ୍ଡମାଳାବିଭୂଷିତାଂ
ଖର୍ବାଂ ଲମ୍ବୋଦରୀଂ ଭୀମାଂ ବ୍ୟାଘ୍ର ଚର୍ମାବୃତାଂ କଟୌ
ନବଯୌବନ ସମ୍ପନ୍ନାଂ ପଞ୍ଚମୁଦ୍ରା ବିଭୂଷିତାଂ
ଚତୁର୍ଭୁଜାଂ ଲୋଲ ଜିହ୍ୱାଂ ମହାଭୀମାଂ ବରପ୍ରଦାଂ
ଖଡ଼୍ଗକର୍ତ୍ତ୍ରି ସମାଯୁକ୍ତ ସବ୍ୟେତର ଭୁଜ ଦ୍ୱୟାଂ
କପାଳୋତ୍ପଳ ସଂଯୁକ୍ତ ସବ୍ୟ ପାଣି ଯୁଗା ନ୍ୱିତାଂ
ପିଙ୍ଗୋଗ୍ରୈକ ଜଟାଂ ଧ୍ୟାୟେନ୍ମୌଳାବକ୍ଷୋଭ୍ୟ ଭୂଷିତାଂ
ବାଳାର୍କମଣ୍ଡଳାକାର ଲୋଚନ ତ୍ରୟ ଭୂଷିତାଂ ॥
ଜ୍ୱଳଚ୍ଚିତା ମଧ୍ୟଗତାଂ ଘୋରଦଂଷ୍ଟ୍ରାଂ କରାଳିନୀଂ
ସ୍ୱାବେଶ ସ୍ମେରବଦନାଂ ସ୍ତ୍ରୀଳଙ୍କାର ବିଭୂଷିତାଂ।
ବିଶ୍ୱବ୍ୟାପକ ତୋୟାନ୍ତଃ ଶ୍ୱେତପଦ୍ମୋପରିସ୍ଥିତାଂ

ସାଧକ ପ୍ରବର ଶିବ ତଷ୍ଟୁ ମୂର୍ତ୍ତିତ କରି ତାଙ୍କ ରୂପ ବର୍ଣ୍ଣନା ଉଲ୍ଲବେଳେ ଦେବର୍ଷି ନାରଦ ଦୃଷ୍ଟି ଦେଲେ । ଦେବୀ ଅଟ୍ଟହାସ୍ୟ ସହିତ ଘୋଷଣ ରାବ କରି ଉଠିଲେ । ସେହି ରାବରେ ଗୁରୁ ବୃହସ୍ପତିଙ୍କ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ କମ୍ପମାନ ହେବାକୁ ଲାଗିଲା । ମହାଜ୍ଞାନୀ ଶଙ୍କର ଦେବୀଙ୍କ ସନ୍ତୋଷ ନିମିତ୍ତ ପୁନର୍ବାର ଉଚ୍ଚାରଣ କଲେ, ଓଁ ହ୍ରୁଂ ସ୍ତ୍ରୀଂ ହୁଂ ଫଟ୍ ।” ଦେବୀଙ୍କର ସେହି ବିକଟ ହାସ୍ୟ ସହିତ ଘୋଷଣ ରାବ ନାରଦଙ୍କ ମନରେ ଭୟ ସଞ୍ଚାର କଲା । ସେ ଦେବୀଙ୍କର ବାଳାର୍କମଣ୍ଡଳ ସଦୃଶ ନେତ୍ର ଦ୍ୱୟକୁ ଆଉ ଅଧିକ କ୍ଷଣ ଲକ୍ଷ୍ୟକରି ନପାରି ଅଧୋବଦନ ହୋଇ ଭୂପୃଷ୍ଠକୁ ଚକ୍ଷୁନତକଲେ ।

ମୁହୂର୍ତ୍ତକ ପରେ ମହେଶ୍ୱର ଉଚ୍ଚ କଣ୍ଠରେ କହି ଉଠିଲେ ହେଇ ହେଉ ମା’କୁ ଦେଖ । କି ସୁନ୍ଦର କମନୀୟ ମୂର୍ତ୍ତି ତାର । ନବୋଦିତ ସୂର୍ଯ୍ୟପରି ଦୀପ୍ତିମୟୀ ଜବାକୁସୁମ ବର୍ଣ୍ଣ । ପଦ୍ମରାଗ ପ୍ରଭାକାଶା ମଣି ମାଣିକ୍ୟ ଭୂଷିତା ଦେବୀ ଷୋଡ଼ଶୀ ତ୍ରିପୁର ସୁନ୍ଦରୀ ରୂପେ ଅବସ୍ଥିତ ରକ୍ତ ପଦ୍ମ ଉପରେ । ସେହି ପଦ୍ମ କୁସୁମ ମୃଣାଳ ଶକ୍ତି ଯୁକ୍ତ ଶିବ ଅଥବା ଶିବଙ୍କ ନାଭି କୋରକରୁ ବହିର୍ଗତ ହୋଇଛି ସୃଷ୍ଟିର ମଙ୍ଗଳାର୍ଥେ । ଅର୍ଦ୍ଧପଦ୍ମାସନା ଦେବୀଙ୍କ ଚତୁର୍ହସ୍ତରେ ଚତୁର୍ବାଣ ଶୋଭିତ । ଊର୍ଦ୍ଧ୍ୱବାମକରରେ ପ ଶତଦାର୍ଦ୍ଧେ କାର୍ମୁକ, ଊର୍ଦ୍ଧ୍ୱଦକ୍ଷକରେ ଅଙ୍କୁଶ ଏବଂ ଅଧକରେ ଶର ସେ ଧାରଣ କରିଛନ୍ତି । ବ୍ରହ୍ମଶକ୍ତି, ଅଥବା ସୃଜନୀ ଶକ୍ତି, ବିଷ୍ଣୁ ଶକ୍ତି ତଥା ପାଳନ ଶକ୍ତି, ରୁଦ୍ରଶକ୍ତି ତଥା ଲୟଶକ୍ତି, ଇନ୍ଦ୍ରଶକ୍ତି ବା ରକ୍ଷାଶକ୍ତି ଏବଂ ବୈଦିକଶକ୍ତି ବା ପ୍ରକାଶ ଶକ୍ତି ଦେବୀଙ୍କ ସିଂହାସନର ପାଦରୂପେ ଅବସ୍ଥାନ କରିଛନ୍ତି । ଷୋଡ଼ଶୀଙ୍କର ଅପର ନାମ ଶ୍ରୀବିଦ୍ୟା । ଶ୍ରୀଜଗତ ଏହାଙ୍କଠାରୁ ଶ୍ରୀ ପ୍ରାପ୍ତ ହୁଅନ୍ତି । ସାଧକଗଣ ରାଜରାଜେଶ୍ୱରୀ ନାମେ ଅବହିତ କରନ୍ତି ।

ଷୋଡ଼ଶୀ ଦେବୀ[illegible] ଉର୍ଦ୍ଧ୍ୱ କରରେ ପାଶ ପଶୁପ୍ରକୃତିକୁ ବନ୍ଧନ [illegible]ର୍ଦ୍ଧେ [illegible]ର୍ମୁକ ଦ୍ୱାରା ଦକ୍ଷ ଅଧଃକରର ଶର [illegible] ଆଦିକୁ ବିଦ୍ଧ କରିବାକୁ ଧାରଣ କରିଛନ୍ତି । ଊର୍ଦ୍ଧ୍ୱ ଦକ୍ଷହସ୍ତର ଅଙ୍କୁଶ ମତ୍ତହସ୍ତୀ ସଦୃଶ ସାଧକର ବିଶୃଙ୍ଖଳିତ ମନକୁ ଆୟତ୍ତ କରିବା ନିୟୋଜିତ । ବିଶ୍ୱ ତାମସିକ ପ୍ରବୃତ୍ତିରେ ନିମଗ୍ନ । ସେହି ତମଃ ନାଶ କରିବାକୁ ଦେବୀଙ୍କ ତ୍ରିନୟନେ ସ୍ଥିତ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ।

ତାଙ୍କ ଶକ୍ତିରେ ଜୀବତ୍ୱର ଉନ୍ମେଷ ହୁଏ କିନ୍ତୁ ନାମ ଓ ରୂପ ପ୍ରକାଶ ପାଏନାହିଁ । ଏକକୁ ଖଣ୍ଡ ଖଣ୍ଡ କରି ଅନେକ କରିବାରେ ତାଙ୍କ ଶକ୍ତିର ଆବଶ୍ୟକ । ସେହି ଅନେକ ଦେବାପରେ ଯେ ସେ ଭୁବନ ବିମୋହିନୀ ରୂପକୁ ପ୍ରସ୍ଫୁଟିତ କରେ ସେ ଷୋଡ଼ଶୀ ଶକ୍ତି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ଇନ୍ଦ୍ର ଓ ରୁଦ୍ର ଷୋଡ଼ଶୀ ଶକ୍ତି ପ୍ରଭାବେ ଶକ୍ତିବାନ । ଇଚ୍ଛାକୁ ରୂପଦାନ କରିବାକୁ ଦେଲେ ଇଚ୍ଛାର ତିନୋଟି ଭଙ୍ଗିମା ଦୃଷ୍ଟିପଥାରୂଢ଼ ହୁଏ । ଇଚ୍ଛାର ସୃଷ୍ଟି, ଇଚ୍ଛାର ସ୍ଥିତି ଓ ଇଚ୍ଛାର ଲୟ । ସେହି ଇଚ୍ଛାକୁ ନିୟନ୍ତ୍ରିତ କରିବାକୁ ଅପର ଦୁଇଟି ଶକ୍ତି ଆବଶ୍ୟକ । ସେମାନେ ଦେବରାଜ ଇନ୍ଦ୍ର ଏବଂ ଆଲୋକମୟ ସୂର୍ଯ୍ୟ । ଇଚ୍ଛା ସୃଷ୍ଟିରୂପେ ବ୍ରହ୍ମା ମନ, ଇଚ୍ଛାର ସ୍ଥିତିରୂପେ ବିଷ୍ଣୁ-ପ୍ରାଣ ଓ ଇଚ୍ଛାର ଲୟରୂପେ ମହେଶ୍ୱର—ଜ୍ଞାନ । ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ମଧ୍ୟ ଦେଇ ଯେତେବେଳେ ବିଶ୍ୱ ପ୍ରକାଶିତ ହୁଏ ସେତେବେଳେ ରୂପ, ରସ, ଶବ୍ଦ, ଗନ୍ଧ ଓ ସ୍ପର୍ଶ ବିକାଶ ଲାଭକରେ । ଜ୍ଞାନ ମୂର୍ତ୍ତୀ ମୋର ପଞ୍ଚମସ୍ତକ ଏହାରି ପ୍ରତୀକ । ପଞ୍ଚମୁଣ୍ଡ ଅର୍ଥ ଜୀବର ପଞ୍ଚ ଜ୍ଞାନେନ୍ଦ୍ରିୟ । ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ଆସନେ ଅଧିଷ୍ଠିତ ହୋଇ ଊର୍ଦ୍ଧ୍ୱତମ ଶକ୍ତିର ସାଧନା କରିବାକୁ ହୁଏ । ସମାଜର ଦୁର୍ଭାଗ୍ୟ—ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ଆସନ ଅଧିକାରରୁ ମାନବ ଯେଉଁଦିନ ବଞ୍ଚିତ ହେଲା ସେହିଦିନ ତାମସିକ ତାନ୍ତ୍ରିକଗଣ ଶ୍ମଶାନରୁ ମୃତ ବ୍ୟକ୍ତିର ପଞ୍ଚନରମୁଣ୍ଡ ସଂଗ୍ରହ କରି ଆସନ ସ୍ଥାପନ କଲେ ।

ମନ, ପ୍ରାଣ ଓ ଜ୍ଞାନ—ସୃଷ୍ଟି, ସ୍ଥିତି ଓ ଲୟ ଏହି ତିନୋଟି ଭଙ୍ଗିମା ହିଁ ବି ଇଚ୍ଛା ଶକ୍ତିର ହେଲା ପ୍ରଥମ ଅଭିବ୍ୟକ୍ତି । କିନ୍ତୁ ଏହି ମନ, ପ୍ରାଣ ଓ ଜ୍ଞାନ—ପଞ୍ଚ ଜ୍ଞାନେନ୍ଦ୍ରିୟର ସାହାଯ୍ୟ ବିନା ସ୍ଥୂଳ ରୂପାୟିତ ହୋଇ ପାରେନା । ତେଣୁ ମୁଁ ପଞ୍ଚମସ୍ତକ ବିଶିଷ୍ଟ ହୋଇ ତା ସିଂହାସନର ପଦରୂପେ ଅବସ୍ଥାନ କରିଛି । ବିଶୁଦ୍ଧ ଜ୍ଞାନ—ଶିବ ଏବଂ ପଞ୍ଚଜ୍ଞାନେନ୍ଦ୍ରିୟ ଯୁକ୍ତ ଜ୍ଞାନ—ସଦାଶିବ । ଇନ୍ଦ୍ର ଇଚ୍ଛା ଶକ୍ତିର ନିୟନ୍ତା ।

ଏହି ପଞ୍ଚଦେବତାଙ୍କ ଊର୍ଦ୍ଧ୍ୱରେ ଦେଖ ଶାୟିତ ଶିବ, ତାଙ୍କ ଉପରେ ପଦ୍ମାସନରେ ଶକ୍ତି । ଏହି ଶାୟିତ ଶିବ ହିଁ ଦ୍ରଷ୍ଟା ପୁରୁଷ । ଶକ୍ତି ତାହାଙ୍କ ଈକ୍ଷଣ ବା କଳ୍ପନା । ଏହି ଶିବ ଏବଂ ମୁଁ ଅଭିନ୍ନ କିନ୍ତୁ ବିଭିନ୍ନ ସ୍ଥାନେ ମୁଁ ମଧ୍ୟ ମୋ ରୂପକୁ ଦ୍ରଷ୍ଟାହୁଏ । ଅତ୍ମା ପରମାତ୍ମା ଯେପରି ଏକ ଏବଂ ବିଭିନ୍ନ ରୂପ କେବଳ ଅବସ୍ଥାନୁସାରେ ଉପଲବ୍ଧିରେ

ଅଭିନୟ ସଦୃଶ । ସେହିପରି ଯେଉଁଠି ଶିବ ମୂର୍ତ୍ତି ଦର୍ଶନ କରୁଛନ୍ତି ସେସବୁ ସ୍ୱୟଂ ମୁଁ ବୋଲି ଧାରଣା କରିବା ଉଚିତ । ଏ ଯେଉଁ ମୂର୍ତ୍ତି ତୁମେ ଦର୍ଶନ କରୁଛ ଏହି ସେହି ଦ୍ରଷ୍ଟା ପୁରୁଷ ଅର୍ଥାତ୍ ବ୍ରହ୍ମର ଇକ୍ଷଣ ରୂପେ ନାଭିପଦ୍ମଠାରୁ ଜାତ ଏହି ଶକ୍ତି । ଏହି ଲକ୍ଷଣ ବା କଳ୍ପନା ରୂପାୟିତ ହୋଇଯାଇ ଶକ୍ତିର ହେଲି ତିନୋଟି ଭଙ୍ଗିମା – ସୃଷ୍ଟି, ସ୍ଥିତି, ଲୟ, ଏହା ଆନୁଷଙ୍ଗ ମଧ୍ୟ ସ୍ଥୂଳଭାବେ ରୂପାୟିତ ହୋଇଯାଇ ହେଲା ପଞ୍ଚଜ୍ଞାନେନ୍ଦ୍ରିୟର ଉଦ୍ଭବ । ସେଥିପାଇଁ ଦେବୀ ଷୋଡ଼ଶୀଙ୍କ ବାହନ ରୂପ—ବହନଶକ୍ତି ରୂପେ ଦେଖିବାକୁ ପାଉଛ—ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ସୂର୍ଯ୍ୟ ଏବଂ ଇନ୍ଦ୍ରଙ୍କୁ । ଏହି ପଞ୍ଚଦେବତା ବାହାନ ହୋଇ ପରାଶକ୍ତିକୁ ବହନ କରି ଆଣିଲେ ସ୍ଥୂଳକୁ ।

ଜୀବଜଗତ ଏପରିକି ପ୍ରତ୍ୟେକ ଜୀବ ପ୍ରଥମେ ଥିଲେ ବୀଜାକାରରେ ଏକ ଅଖଣ୍ଡ କାଳ ଗର୍ଭେ । ବୀଜାକାରରେ ସେମାନେ ଯେଉଁଠିଥିଲେ ତାହାହିଁ କାଳୀ ଶକ୍ତି । ସୂକ୍ଷ୍ମ ବୀଜାକାରେ ରହି ଏହି ଜୀବ ମାନଙ୍କର ତୃପ୍ତି ହେଲା ନାହିଁ । ଅଙ୍କୁରିତ ହୋଇ—ବ୍ୟଷ୍ଟିଭାବେ ସେମାନେ ପ୍ରତିଷ୍ଠିତ ହେବା ନିମିତ୍ତ ଆକାଙ୍କ୍ଷା ହେଲା । ଏହି ଆକାଙ୍କ୍ଷା ହିଁ ତାରା ଶକ୍ତି । ଆକାଙ୍କ୍ଷା—ତ୍ରୟ ଭଙ୍ଗିମାରେ ସ୍ପନ୍ଦିତ ହେଲା । ମୁଁ ହେବି, ମୁଁ ରହିବି, ମୁଁ ପୁନର୍ବାର ବିଲୟ ହେବି । ଏହି ଆକାଙ୍କ୍ଷାକୁ ରୂପ ଦେବାକୁ ଯାଇ ପଞ୍ଚଜ୍ଞାନେନ୍ଦ୍ରିୟର ଉଦ୍‌ଭବ ହୋଇଛି । ମୁଁ ଦେଖିବି, ଶୁଣିବି, ଆସ୍ୱାଦନ କରିବି, ସ୍ପର୍ଶ କରିବି, ଆଘ୍ରାଣ କରିବି । ଏହିଁ ଦେବୀ ଷୋଡ଼ଶୀର ଶକ୍ତି !

ଉତ୍କଳର ଭୁବନେଶ୍ୱର କ୍ଷେତ୍ରରେ ଏହି ଷୋଡ଼ଶୀ ଭୁବାଧିପା ଧାମରେ ଆବିର୍ଭୂତା ହେବେ । ବୀଜାକାରରେ ସମସ୍ତଭୁବନ ଏହି ଦେବୀ ବାଣୀରେ ଧାରଣ କରିବାକୁ ସମର୍ଥ ।

ନାରଦ ଆକାଶ ମାର୍ଗରେ ଦେବୀ ଷୋଡ଼ଶୀଙ୍କୁ ବୁଧ ମହ ଗ୍ରହ ଉପରେ ଦର୍ଶନ କଲେ । ଚନ୍ଦ୍ର ସୁତ ବୁଧଙ୍କୁ ସମସ୍ତ ଶକ୍ତି ଦାନ କରୁଛନ୍ତି ଦେବୀ ଷୋଡଶୀ । ତାଙ୍କର କମନୀୟ କାନ୍ତି ମଧ୍ୟରେ ଦାର୍ଶନିକ ଭାବ ନାରଦଙ୍କୁ ଉଦ୍‌ବୁଦ୍ଧ କରିଦେଲା । ମା'ର ଅପୂର୍ବ ରୂପ ଦର୍ଶନ କରୁ କରୁ ସେ ଶ୍ରୁତ ହେଲେ ଶିବଙ୍କ ମୁଖରୁ ଷୋଡ଼ଶୀ ଧ୍ୟାନ । ଶିବଙ୍କ ସୁଲଳିତ ସ୍ୱର ସହିତ ରୂପବର୍ଣ୍ଣନାରେ ମୁଗ୍‌ଧ ହେଲେ ଗାୟକ ପ୍ରଧାନ ନାରଦ । ତାଙ୍କର ହସ୍ତ ଯୁଗ୍ମ ଆପେ ଆପେ ଯୁକ୍ତ ହୋଇଗଲା । ସେ ଶୁଣିଲେ—

ବାଳାର୍କମଣ୍ଡଳାଭାସାଂ ଚତୁର୍ବାହୁଂ ତ୍ରିଲୋଚନାମ୍ ।
ପାଶାଙ୍କୁଶ ଶରାଂଶ୍ଚାପାନ୍ ଧାରୟନ୍ତୀଂ ଶିବାଂ ଭଜେ ॥
ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରଶ୍ଚ ଈଶ୍ୱରଶ୍ଚ ସଦାଶିବଃ
ଏତେ ପଞ୍ଚ ଖୁରାଃ ପ୍ରୋକ୍ତାଃ ଫଳକସ୍ତୁ ପରଃ ଶିବଃ ॥
ତସ୍ୟୋପରି ମହାକାଳୋ ଭୁବନେଶୋ ବିରାଜତେ ।
ଯେନ ସାର୍ଦ୍ଧଂ ମହାଦେବୀ କାଳିକା ରମଣେ ସଦା ॥

ଧ୍ୟାନ ପାଠ ପରେ ମହାଯୋଗୀ ଶିବ କହିଲେ କୁଙ୍କୁମ ଅରୁଣା ବର୍ଣ୍ଣା ଆରକ୍ତ ତ୍ରିନୟନା ଦେବୀଙ୍କୁ ଶ୍ରୀବିଦ୍ୟା ନାମେ ଅବିହିତ କରାଯାଏ । ଜୀବ ଜଗତକୁ ଏହି ଦେବୀ ଶ୍ରୀ ଦାନ କରନ୍ତି । ଶ୍ରୀ ଦାନ କରିବା ହେତୁ ଏହାଙ୍କର ଅପର ନାମ ରାଜରାଜେଶ୍ୱରୀ । ବୁଧ ମହାଗ୍ରହର ମନ୍ଦ ପ୍ରଭାବରୁ ରକ୍ଷା ପାଇବା ପାଇଁ ଏହି ଦେବୀଙ୍କୁ ଓଁ ହ୍ରୀଂ ଶ୍ରୀଂ କ୍ଳୀଂ ଷୋଡ଼ଶୀଦେବ୍ୟୈ ନମଃ (ସ୍ୱାହା) ମନ୍ତ୍ରରେ ଜପ କରାଯାଏ ।

ଜ୍ଞାନର ଜୀବନ୍ତ ବିଗ୍ରହ ଭଗବାନ ଶିବ ଷୋଡ଼ଶୀ ମହାବିଦ୍ୟାଙ୍କ ବିଷୟରେ କହି ସାରି କହୁ ସମୟ ତାଙ୍କ ମନ୍ତ୍ର ଜପକଲା ପରେ ଅସୀମ ଆକାଶ ବକ୍ଷରେ ନିଶାକର ଚନ୍ଦ୍ରଙ୍କୁ ଦୃଷ୍ଟି ଦେଲେ । ସେ ଚନ୍ଦ୍ର ମହାଗ୍ରହଙ୍କ ଆଡ଼କୁ ନାରଦଙ୍କ ଦୃଷ୍ଟି ଆନତ କରି କହିଲେ, ହେଇ ଚନ୍ଦ୍ର ମହାଗ୍ରହଂରେ ଭୁବନେଶ୍ୱରୀ ମହାବିଦ୍ୟାଙ୍କୁ ଦର୍ଶନ କର ନାରଦ । ଏସବୁ ଅତି ସୂକ୍ଷ୍ମ ନିଗୁଢ଼ ଜ୍ଞାନ ତତ୍ତ୍ୱ । ସୂକ୍ଷ୍ମ ସ୍ତରରେ ବିସ୍ତାର କଲେ ଦେବୀ ଷୋଡ଼ଶୀ ଶକ୍ତି ନାମ ଓ ରୂପ (ଆକାର) ରେ ପରିଣତ ହୋଇ ପାରିଲେ ନାହିଁ । ନାମ ଓ ରୂପରେ ପରିଣତ ପାଇଁ ସେ ବୁଧ ମହାଗ୍ରହଙ୍କ ନିମ୍ନକୁ ଚନ୍ଦ୍ରଙ୍କ ମଧ୍ୟକୁ ଖସି ଆସି ଭୁବନେଶ୍ୱରୀ ରୂପରେ ପ୍ରକାଶିତ ହେଲେ । ସମସ୍ତ ଭୁବନକୁ ଋତୁ ଶୀତ କିରଣ ଦାନକରି ସୌର ଶକ୍ତିର ଅସହନୀୟ ଉତ୍ତାପରୁ ରକ୍ଷା କଲେ । ପଞ୍ଚଜ୍ଞାନେନ୍ଦ୍ରିୟର ଆକାଂକ୍ଷା ପରିପୂରଣ ନିମିତ୍ତ ଉଦ୍ଭବ ହେଲେ ପଞ୍ଚତନ୍ମାତ୍ରା । ଏ ହିଁ ଭୁବନେଶ୍ୱରୀ ଶକ୍ତି । ଜ୍ଞାନେନ୍ଦ୍ରିୟ ମଧ୍ୟରେ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଗଣ୍ୟ । ଚକ୍ଷୁର ଆକାଂକ୍ଷା ବିଭିନ୍ନ ରୂପଦର୍ଶନ, କର୍ଣ୍ଣର ଆକାଂକ୍ଷା ବିଭିନ୍ନ ଶବ୍ଦ ଶ୍ରବଣ, ନାସିକାର ଆକାଂକ୍ଷା ସୁମିଷ୍ଟ ମନ ମୁଗ୍ଧ କର ଗନ୍ଧ ଆଘ୍ରାଣ, ଜିହ୍ୱାର ଆକାଂକ୍ଷା ବିଭିନ୍ନ ରୁଚିକର ସ୍ୱାଦୁ ଆସ୍ୱାଦନ, ତ୍ୱକ୍‌ର ଆକାଂକ୍ଷା ସ୍ପର୍ଶ ସୁଖ ଅନୁଭବ । ସେଥିପାଇଁ ଉଦ୍ଭବ ହେଲା ପଞ୍ଚତନ୍ମାତ୍ରା । ସାଂଖ୍ୟ ଭାଷାରେ କହିବାକୁ

ଗଢ଼ିଲେ "ଅସ୍ମିତା"ରୁ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ "ତନ୍ମାତ୍ରା" ଉଦ୍ଭବ ହୁଏ । ବ୍ୟଷ୍ଟି ଇଚ୍ଛାରୁ ଯେପରି ଜ୍ଞାନେନ୍ଦ୍ରିୟର ଉଦ୍ଭବ ହେଲା, ସେହିପରି ଜ୍ଞାନେନ୍ଦ୍ରିୟର ଆକାଂକ୍ଷା ପରିପୂରଣ ନିମିତ୍ତ ଅସ୍ମିତାରୁ ପଞ୍ଚତନ୍ମାତ୍ରାର ଉଦ୍ଭବ ହୋଇଛି । ଭୁବନେଶ୍ୱରୀ ଏହି ତନ୍ମାତ୍ରିକ ଜଗତର ଅଧିଶ୍ୱରୀ । ଅର୍ଥାତ୍ ରୂପ-ରସ୍-ତେଜ-ଗନ୍ଧ-ସ୍ପର୍ଶର ଅଧିଶ୍ୱରୀ ।

କେହି ଯଦି କେବେ କୌଣସି ଚିତ୍ର ଅଙ୍କନ କରିବାକୁ ଯାଏ ତେବେ ପ୍ରଥମେ ତାଙ୍କୁ ଚିତ୍ରଟିର ଆକାରାନୁଯାୟୀ କେତୋଟି ରେଖା ଟାଣିବାକୁ ହୋଇଥାଏ, ପରେ ସେହି ରେଖାକୁ ଅବଲମ୍ବନ କରି ଚିତ୍ରଟିର ଅବୟବ ଅଙ୍କାଯାଏ । ସେହିଭଳି ଭୁବନେଶ୍ୱରୀ ସ୍ଥୂଳରେ ଯାହା ପରିଣତ ହେବ ତାର ସୂକ୍ଷ୍ମ ଅବୟବ ରଚନା କରନ୍ତି । ସ୍ଥୂଳରେ ଯାହା ରୂପାୟିତ ହେବ ତାହାର-ରେଖା ଏହାଙ୍କ ଦ୍ୱାରହିଁ ହୋଇଥାଏ । ମୃତ୍ୟୁପରେ ସ୍ଥୂଳ ଦେହ ଧାରଣ ପୂର୍ବରୁ ସାଧାରଣତଃ ଜୀବ ଏହି ତନ୍ମାତ୍ରିକ ଦେହ ନେଇ ଅବସ୍ଥାନ କରେ । ଏହାକୁ ଜୀବର ସୂକ୍ଷ୍ମ ଶରୀର କୁହାଯାଏ । ଏହି ସୂକ୍ଷ୍ମ ଦେହ ନେଇ ଆତ୍ମା ଧୂର୍ଣ୍ଣାୟୁମାନ ଅବସ୍ଥାକୁ ସ୍ୱର୍ଗ, ନର୍କର ବ୍ୟବସ୍ଥା ଥିବା ବିଭିନ୍ନ ଶାସ୍ତ୍ରରୁ ଜଣାପଡେ । ମୁଁ ଭୁବନେଶ୍ୱର । ପ୍ରତ୍ୟେକ ଆତ୍ମା ମୃତ୍ୟୁପରେ ମୋ ନିକଟକୁ ଛୁଟି ଆସନ୍ତି ସେମାନଙ୍କ ପୂର୍ବ ଜନ୍ମର ନିଦାନ ଶ୍ରବଣ ପାଇଁ । ମୁଁ ଏହି ଶକ୍ତି ପ୍ରାପ୍ତ ହୋଇଛି ଦେବୀ ଭୁବନେଶ୍ୱରୀଙ୍କ ଠାରୁ । ତାଙ୍କର ଶକ୍ତି ଗ୍ରହଣ କରି ମୁଁ ଭୁବନେଶ୍ୱର ନାମରେ ଖ୍ୟାତ । ଯେଉଁମାନଙ୍କ ପାର୍ଥିବ ଆକାଂକ୍ଷା ଥାଏ ସେମାନେ ମୃତ୍ୟୁପରେ ମଧ୍ୟ ମରିଯିବା କଥା ଜାଣି ପାରନ୍ତି ନାହିଁ । ଭୁବନେଶ୍ୱରୀ ଶକ୍ତିଙ୍କ ଦ୍ୱାରା ସୃଷ୍ଟ ପ୍ରେତ ପଥ ପ୍ରଦର୍ଶକଙ୍କ ବାଣୀ ସେମାନେ ଶୁଣି ନ ଶୁଣିଲା ପରି ରହନ୍ତି । ଏପରିକି ସେମାନଙ୍କୁ ଦର୍ଶନ ମାତ୍ରେ ଭୟରେ ପଳାୟନ କରନ୍ତି । କାରଣ ପ୍ରେତ ପଥ ପ୍ରଦର୍ଶକମାନେ କୁ ପ୍ରେତଙ୍କ ଉପରେ ଘୋଷଣ ରୂପ ଦିଅନ୍ତି ଇହଲୋକ ତ୍ୟାଗକରି ପିତୃ ଲୋକ, ଦେବ ଲୋକ, ବ୍ରହ୍ମ ଲୋକ, ସତ୍ୟ ଲୋକ ଆଦି ଲୋକକୁ ଯାତ୍ରା କରିବାକୁ କିନ୍ତୁ ପ୍ରେତର ପାପ ଇଚ୍ଛା ପୂରଣ ନିମିତ୍ତ ସେ ଚାହେଁ ଏହି ଲୋକରେ ବସବାସ କରି ତାର ତୃଷ୍ଣା ମେଣ୍ଟାଇବାକୁ । ପାର୍ଥିବନ ଗତି ପରେ ଯେତେବେଳେ ସେ ଅସମର୍ଥ ହୁଏ ପାପଇଚ୍ଛା ଚରିତାର୍ଥ ନିମିତ୍ତ ସେତେବେଳେ ପ୍ରେତ ପଥ ପ୍ରଦର୍ଶକଙ୍କ ସାହାଯ୍ୟ ଲୋଡ଼ି ଭୁବନେଶ୍ୱରୀ ଶକ୍ତିଙ୍କ ପଦାଶ୍ରିତ ହୁଏ । ସେ ହିଁ ଏକମାତ୍ର

ସେମାନଙ୍କର ଉଦ୍ଧାର କର୍ତ୍ତୀ । ପିତୃ ଲୋକ ଚନ୍ଦ୍ର ଗ୍ରହର ସନ୍ନିକଟରେ । ତେଣୁ ମୃତ୍ୟୁପରେ ଜୀବମାନେ ସୂକ୍ଷ୍ମ ଶରୀର ଧାରଣ କରି ପିତୃ ଲୋକ ଗମନ ପୂର୍ବକ ଦେବୀ ଭୁବନେଶ୍ୱରୀଙ୍କ ଦର୍ଶନ ଲାଭ କରିଥାଏ । ଯଦି ତାର ଆତ୍ମା ନିର୍ବାଣ ମୁଖୀ ହୋଇଥାଏ ତେବେ ସେ ଦେବ ଲୋକ, ବ୍ରହ୍ମଲୋକ ଆଦିକୁ ଗମନ କରିଥାଏ । ନଚେତ୍ ପୁନର୍ବାର ଇହଲୋକକୁ ପ୍ରତ୍ୟାଗମନ ପୂର୍ବକ ମାତୃଗର୍ଭରେ ଅବସ୍ଥାନ କରେ ।

ସେ ହିଁ ଭୁବନେଶ୍ୱରୀ । ଭୁବନ ଆକାରରେ—ବିଶ୍ୱ ଆକାରରେ—ସ୍ଥୂଳ ରୂପରେ ଯାହା ପରିଣତ ଦେଖା ହୋଇ ନାହିଁ । ହେଲେ ତାହା ସୂକ୍ଷ୍ମରୂପେ ଏହି ଭୁବନେଶ୍ୱରୀଙ୍କ ମଧ୍ୟରେ ରହିଛି । ପିତୃ ପୁରୁଷମାନେ ଏହି ଭୁବନେଶ୍ୱରୀଙ୍କ ଅଙ୍କରେ ଅବସ୍ଥାନ କରନ୍ତି । ସ୍ଥୂଳରେ ନାମ ଓ ଆକାରରେ ଯାହା ଆକାରିତ ହେବ ତାହାର ପୂର୍ବାଭାସ ପ୍ରାପ୍ତ ହେବାକୁ ହୁଏ ତନ୍ମାତ୍ରିକ ଦେହରେ । ଏହି ତନ୍ମାତ୍ରିକ ଦେହ ରଚନା କରନ୍ତି ଭୁବନେଶ୍ୱରୀ । ଦେବତାମାନଙ୍କର ରୂପ କଳ୍ପନା, ସ୍ୱର୍ଗ, ନରକାଦି ରୂପ କଳ୍ପନା ଏହି ଭୁବନେଶ୍ୱରୀଙ୍କ ଠାରେ ନିହିତ । ଭୂଃ ଓ ସ୍ୱର୍ଲୋକର ସମସ୍ତ ଜୀବ ଓ ଦେବତା; ଦେବୀ ଭୁବନେଶ୍ୱରୀଙ୍କ ଠାରେ ସୂକ୍ଷ୍ମ ଆକାରରେ ଅବସ୍ଥାନ କରିଛନ୍ତି ।

ଦେବଲୋକର ସୃଷ୍ଟିକାରୀ ଏହି ଭୁବନେଶ୍ୱରୀ । ଇହଲୋକରୁ ଆତ୍ମା ସ୍ଥୂଳଦେହ ପରିତ୍ୟାଗ କରି ସୂକ୍ଷ୍ମଦେହ ଧାରଣ ପୂର୍ବକ ଏହି ଭୁବନେଶ୍ୱରୀଙ୍କ ଅଙ୍କରେ ଆଶ୍ରୟ ଲାଭ କରି ତାଙ୍କର ଆଶୀଷରେ ଦେବ ଲୋକକୁ ଯାତ୍ରା କରି ଦେବତା ନାମେ ଅଭିହିତ ହୁଅନ୍ତି । ଦେବୀଙ୍କ ମଧ୍ୟରେ ବ୍ୟକ୍ତିଭାବ ଥିଲେ ମଧ୍ୟ ତାହା ସ୍ଥୂଳ ନୁହେଁ, ସୂକ୍ଷ୍ମ—ତନ୍ମାତ୍ରାରେ ଗଠିତ । ସେ ସୂକ୍ଷ୍ମ ପ୍ରବୃତ୍ତିର ମଧ୍ୟ ଅଧିଶ୍ୱରୀ । ଇହଜନ୍ମରେ ତାଙ୍କର ପୂଜାର୍ଚ୍ଚନା କରି ଜୀବ ଜଗତ ହୀନ ପ୍ରପଞ୍ଚ ପ୍ରବୃତ୍ତିରୁ ନିଷ୍କୃତି ପାଏ । ମୃତ୍ୟୁପରେ କଦର୍ଯ୍ୟ ପ୍ରବୃତ୍ତି ହୀନ ହୋଇ ଦେବୀଙ୍କ ସୁଶୀତଳ ଅଙ୍କରେ ଶୟନ କରେ ।

ଗୋଟିଏ ମନ୍ଦାର ଫୁଲ ରଚନା କରିବାର ପ୍ରବୃତ୍ତି ମନରେ ଜାଗ୍ରତ ହେଲା । ଅସଂଖ୍ୟ ପ୍ରବୃତ୍ତି ମଧ୍ୟରୁ ମନ୍ଦାର ପୁଷ୍ପ ରଚନା ପ୍ରବୃତ୍ତିର ପ୍ରାବଲ୍ୟ ହିଁ ତାରି ଶକ୍ତି । ସେହି ପ୍ରବୃତ୍ତି ଅନ୍ତରରେ ଗୋଟିଏ ମନ୍ଦାର ଫୁଲ ସୃଷ୍ଟିକଲା । କିଛିକ୍ଷଣ ଚପଳ ମନ ପ୍ରାଣଦ୍ୱାରା ଏହି ମନ୍ଦାର ପୁଷ୍ପଟିକୁ

ଏକାନ୍ତ ଭାବେ ଧରି ରଖିଲା, ପୁନର୍ବାର କିଛିକ୍ଷଣ ପରେ ମନ୍ଦାର ପୁଷ୍ପ ଚପଳ ମନ ମଧ୍ୟରେ ବିଲୀନ ହୋଇଗଲା । ପୁନର୍ବାର ତାହା ପ୍ରକାଶ ପାଇ ପାରିଲା ନାହିଁ । ମନ ସୃଷ୍ଟି ମୃଷ୍ଟି କଲା, ପ୍ରାଣ ତାହାକୁ କିଛିକ୍ଷଣ ଧରି ରଖିଲା ଆଉ ଜ୍ଞାନରେ ତାହା ବିଲୟ ପ୍ରାପ୍ତ ହେଲା । ଏସବୁ ଷୋଡ଼ଶୀ ଶକ୍ତିର ଅଧିକାର । ଏହାକୁ ସ୍ଥୂଳରେ—ଦୃଶ୍ୟମାନ ଜଗତରେ ରୂପ ଦେବାକୁ ହେଲେ ଆହୁରି ଅନେକ ଉପକରଣ ଆବଶ୍ୟକ । ଯେତେବେଳେ ମନ ମଧ୍ୟରେ ମନ୍ଦାର ପୁଷ୍ପର ବର୍ଣ୍ଣ, ଆକାର ପ୍ରଭୃତିର କଳ୍ପନା ଗଭୀର ଭାବେ ଜାଗ୍ରତ ହେଲା, ତାହା କି ଭଳି ଭାବରେ କରାଯାଇ ପାରିବ ତାର ଗୋଟାଏ ସୂକ୍ଷ୍ମ ଅବୟବ ମନ ମଧ୍ୟରେ ପ୍ରଥମେ ରୂପ ନେଇଥାଏ ତତ୍‌ପରେ ତାହା ଭୂକମ୍ପା ମଧ୍ୟରେ କେତେଟା ସରୁ ରେଖା ଟାଣିବାକୁ ହୁଏ । ଏହି ରେଖାକୁ ଦେଖି ସମସ୍ତେ ଅବଶ୍ୟ ଜାଣି ପାରିବେ ନାହିଁ, ଏହା କଣ ବୋଲି ମାତ୍ର ଜଣେ ଚିତ୍ରକର ବେଶ୍ ଭାବେ ଉପଲବ୍ଧି କରିପାରିବ ଏହା ଗୋଟିଏ ମନ୍ଦାର ଫୁଲ ଅଙ୍କିବାର ଚେଷ୍ଟା ବୋଲି । ଏହାହିଁ ଦେବୀ ଭୁବନେଶ୍ୱରୀ ଶକ୍ତିର କଥା ।

ଉଦିତ ଦିନକର ପରି ଦ୍ୟୁତିଦେଖ 'ମା' ର ଦେହ କାନ୍ତି । କପାଳେ ଅର୍ଦ୍ଧଚନ୍ଦ୍ର ଓ ମସ୍ତକ ଦେଶ ମୁକୁଟ ଦ୍ୱାରା ସୁଶୋଭିତ । ଜ୍ଞାନପିପାସୁ ସନ୍ତାନମାନଙ୍କ ଉଦ୍ଦେଶ୍ୟରେ ପୀନୋନ୍ନତ ପୟୋଧର । ତ୍ରିନେତ୍ରୀ ଚନ୍ଦ୍ର ସୂର୍ଯ୍ୟ ଓ ଅଗ୍ନିର ତେଜ ଧରି ତ୍ରିବିଧ ନୟନ । ଦୁଃଖର ଦୃଷ୍ଟିଚ୍ଛେଦ ଟାଣି ମୁଖରେ ହାସ୍ୟଚ୍ଛଟା ଦୃଶ୍ୟମାନ । ହସ୍ତ ଚତୁଷ୍ଟୟରେ ବରମୁଦ୍ରା, ଅଙ୍କୁଶ, ପାଶ ଏବଂ ଅଭୟମୁଦ୍ରା । ଯେ ତାଙ୍କୁ ଆରାଧନା କରେ ତାଙ୍କ ପାଇଁ ବରମୁଦ୍ରା, ଯେ ଭୟ ବିହ୍ୱଳରେ ଆହ୍ୱାନ୍ ମାଂ ଧ୍ୱନି ଦେଇ ତାଙ୍କର ଶରଣାପନ୍ନ ହୁଏ ସେମାନଙ୍କ ପାଇଁ ଅଭୟମୁଦ୍ରା ଏବଂ ପଶୁ ପ୍ରକୃତିର ଅଜ୍ଞାନମାନଙ୍କ ନିମିତ୍ତ ପାଶ ଓ ଅଙ୍କୁଶ ହସ୍ତରେ ବିଦ୍ୟମାନ ।

ନାରଦ ଆକାଶ ମାର୍ଗରେ ଚନ୍ଦ୍ର ମହାଗ୍ରହଙ୍କ ମଧ୍ୟରେ ଦୃଷ୍ଟିଦେଲେ ଦେବୀ ଭୁବନେଶ୍ୱରୀଙ୍କୁ । ଶିବଙ୍କ ବର୍ଣ୍ଣନାନୁସାରେ ସେ ଦେବୀଙ୍କ ସ୍ୱରୂପ ଦର୍ଶନ କରି ନିଜକୁ କୃତକୃତ୍ୟ ମନେ କଲେ । ଜୀବର ସୂକ୍ଷ୍ମ ଶରୀରାଧିକାରୀ ମହା ଭୁବନେଶ୍ୱରୀ ଶକ୍ତିଙ୍କୁ, ସେ ହୃଦୟ ସିଂହାସନରେ ଆସୀନା କରି ନିଜର ସମସ୍ତ ଅସାର ଅଭିବ୍ୟକ୍ତି ତ୍ୟାଗପୂର୍ବକ ତାଙ୍କ ଶରଣା-ପନ୍ନ

ଦେଖିଲେ । ସେ ଶାନ୍ତ ସ୍ୱଭାବରେ ଚନ୍ଦ୍ରଙ୍କ ଦୋଳାନ୍ଦୋଳନ ଶୁଣି ନେଲେ ଶିବଙ୍କ କଣ୍ଠସ୍ୱର । ଶିବ ଗାନ୍ତି ଉଠିଲେ । ମର୍ତ୍ତ୍ୟବାସୀ ଦେବୀଙ୍କୁ ଦ୍ୱିହସ୍ତ ବିଶିଷ୍ଟ ଭାବରେ ଆରାଧନା କରନ୍ତି । ଯେଉଁମାନେ ତନ୍ତ୍ର ମତରେ ପୂଜାର୍ଚ୍ଚନା କରିବାକୁ ଇଚ୍ଛନ୍ତି ସେମାନେ ଦେବୀଙ୍କର ଚତୁର୍ହସ୍ତା ମୂର୍ତ୍ତିକୁ ଆରାଧନା କରନ୍ତି । ସେ ଗାଇ ଉଠିଲେ ଦେବୀଙ୍କ ଧ୍ୟାନ ।

ଉଦ୍ୟଦ୍ଦିନକରଦ୍ୟୁତିମିନ୍ଦୁ କିରୀଟାଂ ତୁଙ୍ଗ-କୁଚାଂ ନୟନତ୍ରୟଯୁକ୍ତାଂ ।
ସ୍ମେରମୁଖୀଂ ବରଦାଙ୍କୁଶ ପାଶାଭୀତିକରାଂ ପ୍ରଭଜେଦ୍ଭୁବନେଶ୍ୱରୀମ୍ ॥

ନାରଦ ନତ ମସ୍ତକ ହୋଇ ଦେବୀଙ୍କୁ ପ୍ରଣାମ ଜ୍ଞାପନ କଲେ । ଊର୍ଦ୍ଧ୍ୱାକାଶରେ ଚଳମାନ ଚନ୍ଦ୍ରମହାଗ୍ରହଙ୍କ ଠାରୁ ଦେବୀ ଭୁବନେଶ୍ୱରୀ ନାରଦଙ୍କୁ ଅଭୟ ପ୍ରଦାନ କଲେ । ତ୍ରିଭୁବନ ଈଶ୍ୱରୀ ଭୁବନେଶ୍ୱରୀଙ୍କ ମହିମା ନାରଦ ନିଜ ଭିତରେ ଅନୁଭବ କରି ଶିବଙ୍କୁ କିଛି ପ୍ରଶ୍ନ କରିବାକୁ ଇଚ୍ଛାକଲା ବେଳେ ଶିବ ପୁନର୍ବାର ଗାଇ ଉଠିଲେ :—

ସିନ୍ଦୂରାରୁଣବିଗ୍ରହାଂ ତ୍ରିନୟନାଂ ମାଣିକ୍ୟ ମୌଳିଂ ସ୍ଫୁରତ୍—
ତାରାନାୟକ ଶେଖରାଂ ସ୍ମିତମୁଖୀମାପୀନବକ୍ଷୋରୁହାମ୍ ।
ପାଣିଭ୍ୟାଂ ମଣିପୂର୍ଣ୍ଣରତ୍ନଚଷକଂ ରକ୍ତୋତ୍ପଳଂ ବିଭ୍ରତୀଂ
ସୌମ୍ୟାଂ ରତ୍ନଘଟସ୍ଥସବ୍ୟଚରଣାଂ ଧ୍ୟାୟେତ ପରମମ୍ବିକାମ୍ ॥

ନମସ୍କାର କଲେ ଶିବ । ନମସ୍କାର କଲେ ନାରଦ । ଶିବ ନମସ୍କାର ବେଳେ ଦେବୀଙ୍କୁ ଧ୍ୟାନ କରି ଅନୁଚ୍ଚ ସ୍ୱରରେ ଜପିଲେ ଦେବୀଙ୍କ ମହାମନ୍ତ୍ର—ଓଁ ହ୍ରୀଂ ଶ୍ରୀଂ ହ୍ରିଂ କ୍ଲୀଂ ଭୁବନେଶ୍ୱରୀ ଦେବ୍ୟୈ ସ୍ୱାହା (ନମଃ) ଜପ କଲେ । ନାରଦ ଶିବଙ୍କଠାରୁ ତାହା ଶୁଣି ନିଜେ ଜପ କରିବାକୁ ଲାଗିଲେ ।

ଦେବୀଙ୍କ ମହାମନ୍ତ୍ର ଜପରେ ଚନ୍ଦ୍ରଙ୍କର ମନ୍ଦ ପ୍ରଭାବ ଧୀରେ ଧୀରେ ଅପସରି ଯାଉଥାଏ । ପୂର୍ବାପେକ୍ଷା ନିଜକୁ ଅଧିକ ଶକ୍ତିଶାଳୀ ବୋଲି ସେ କଲେ ଅନୁଭବ । ଶକ୍ତିର ସନ୍ତାନ ସେ ଶାକ୍ତ । ବିଶ୍ୱରେ ଏପରି କିଛି ନାହିଁ ଯାହାକି ବାସ୍ତବ ଶାକ୍ତ ପକ୍ଷେ ଅସମ୍ଭବ । ଦକ୍ଷର କନ୍ୟା ସତୀଙ୍କ ମହାବିଭୂତି ଦଶ ମହାବିଦ୍ୟା । ସେ ଶିବଙ୍କ ପତ୍ନୀ ହେଲେବି ପାର୍ବତୀ ଅନ୍ତର୍ବାହ୍ୟତ କଲେ ସେ ଯେ ବିଶ୍ୱର ଜନନୀ ଏପରିକି ସେହି ଶିବଙ୍କର ମଧ୍ୟ, ତାହା ପରମଜ୍ଞାନୀ ଶିବ ଜାଣିପାରି ନଥିବା କଥା ହେବ ନାରଦ

ବସ୍ମୟାଭିଭୂତ ହେଲେ । ସର୍ବଗ୍ରହ ମଧ୍ୟରେ ଅଧିଷ୍ଠିତା ଜନନୀ ସତୀଙ୍କ ଅମାପ ଶକ୍ତି ବିଷୟରେ ନାରଦ ଯେତିକ ଚିନ୍ତାମଗ୍ନ ହେଲେ ସେତିକ ଅସୀମ ପରି ମନେ କଲେ । "ଭୁବନାନାଂ ପାଳୟିତ୍ରୀଂ" ହେତୁ ଦେବୀ ଭୁବନେଶ୍ୱରୀଙ୍କ ଠାରୁ ଚକ୍ଷୁନତ କରି ସମ୍ମୁଖଭାଗରେ ମହାତ୍ମା ଶିବଙ୍କୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଦେଖିଲେ ଶିବଙ୍କର ସମସ୍ତ ଶକ୍ତିକୁ ଅପହରଣ କରି ଏକ ମହାବିଦ୍ୟା ଦଣ୍ଡାୟମାନ । ଯେଉଁ ଶିବ ମହାବିଦ୍ୟା ମାନଙ୍କର ଅମାପ ରୂପ, ଗାରିମା ମୁକ୍ତ କଣ୍ଠରେ ବ୍ୟକ୍ତ କରୁଥିଲେ ସେ ଶିବ ଆଉ ନାହାନ୍ତି । ସତେଯେପରି ସେହି ଶିବଙ୍କର ଏକ ଘୃଣ୍ୟମୂର୍ତ୍ତି ଦଣ୍ଡାୟମାନ । ଶୈଥିଲ୍ୟ ତାଙ୍କ ପ୍ରତି ଶିରାରେ ପ୍ରବେଶ କରି ତାଙ୍କୁ କ୍ଳାନ୍ତ ଅବସନ୍ନ କରି ପକାଇଛି—ନିସ୍ତେଜ ହୋଇ ପଡ଼ୁଛି ତାଙ୍କ ଅପରୂପ ଅଙ୍ଗରାଜି ।

ଏକଣ ହେଲା ଶିବଙ୍କର ! ଆତଙ୍କିତ ହେଲେ ନାରଦ । କ୍ଷୁଦ୍ର ଶିଶୁ ଭଳି ସେ ଚିତ୍କାର କରିଉଠିଲେ ହେ ଶିବ ହେ ଭୈରବ ଆଦ କହି । ଶିବଙ୍କର ଦୁରବସ୍ଥା ଆଉ ଅଧିକ ନ ଦେଖିବାକୁ ମହାତ୍ମା ନାରଦ ଅନ୍ୟଦିଗକୁ ମୁଖ ଫେରାଇଲା ସମୟରେ ଶୁଣିପାରିଲେ ସତେ ଯେପରି ଶିବ ତାଙ୍କୁ କହୁଛନ୍ତି ମହାଭୈରବୀ ରୂପରେ ଆବିର୍ଭୂତା ଜନନୀ ମହାମାୟାଙ୍କୁ ତୁମେ କଣ ଚିହ୍ନି ପାରୁନାହଁ ନାରଦ ! ଯେଉଁ ଜନନୀ ଭୁବନେଶ୍ୱରୀ ଶକ୍ତିରୂପେ, ଭୂତପ୍ରେତାଦି ପ୍ରତ୍ୟେକେ ଜୀବାତ୍ମାମାନଙ୍କୁ ସୂକ୍ଷ୍ମ ଭାବେ ଧାରଣ କରି ରଖିଥିଲା । ସେହି ଭୁବନେଶ୍ୱରୀ ଶକ୍ତି ବର୍ତ୍ତମାନ ସ୍ଥୂଳ ବ୍ୟଷ୍ଟି ଇଶ୍ୱରକୁ ନାମ ଓ ଆକାରରେ ପରିଣତ ଭୈରବୀ ରୂପରେ ଦେଖା ଦେଇଛନ୍ତି । ମୋର ଯେଉଁ ଭୟଙ୍କର ରାବ ସଚରାଚର ପରିବ୍ୟାପ୍ତ ଯେଉଁରାବ ବେଳେ ବେଳେ ଅଶନୀ ନାଦଠାରୁ ଆହୁରି ଭୟଙ୍କର ନାଦରେ ଏ ବିଶ୍ୱକୁ ସ୍ତବ୍ଧ କରି ପକାଏ ସେହିରାବ ହିଁ ଭୈରବୀ ଶକ୍ତି । ମୁଁ ମହାଭୈରବ ରୂପେ ଭୁବନ ବଦିତ କେବଳ ମହାଭୈରବୀ ପାଇଁ । ଯାହା ଦେଖୁଛ ଯାହାଶୁଣୁଛ ଏପରିକ ଯାହାଅନୁଭବ କରୁଛ ତାହା ଶକ୍ତିର କାର୍ଯ୍ୟ ।

ହେ ସାଧକ ନାରଦ ତୁମେ ତୁମର ଆକାଙ୍କ୍ଷିତ ଭୋଗମୟ ଦେହ ନେଇ ସ୍ଥୂଳରୂପରେ ଏବେମାତ୍ର ଜଗତରେ ଉପସ୍ଥିତ ହେଲ । ପଞ୍ଚଭୌତିକ ଦେହ-ହାଡ଼-ମାଂସର ଦେହ ଧାରଣକରି ତୁମେ ଏଥିର ଏକ ନାମ ରୂପମୟ ଜଗତକୁ ଆସି ବିସ୍ମୟ ସୃଷ୍ଟିଦେଲ । ଆଶ୍ଚର୍ଯ୍ୟ ତୁମେ—

ଆଶ୍ଚର୍ଯ୍ୟ ତୁମର ଏ ସ୍ଥୂଳ ଦେହ—ଆଶ୍ଚର୍ଯ୍ୟ ଏହି ବିଶ୍ୱ—ଆଶ୍ଚର୍ଯ୍ୟ ଏହି ତୁମର ସ୍ଥୂଳ ଦେହ ମଧ୍ୟରେ ସୂକ୍ଷ୍ମ ଇନ୍ଦ୍ରିୟ ବର୍ଗର ଗନ୍ତବ୍ୟ, କ୍ରିୟାକଳାପ । ଆଶ୍ଚର୍ଯ୍ୟ ତୁମର ସୁଖ ଦୁଃଖର ଅନୁଭୂତି, ଆଶ୍ଚର୍ଯ୍ୟ ତୁମର ସତ୍, ଅସତ୍ ବସ୍ତୁର ଧାରଣାବତୀ ମେଧା, ଆଶ୍ଚର୍ଯ୍ୟ ମଧ୍ୟ ଲୋକ ଜଗତର କାମ, କ୍ରୋଧ ଲୋଭାଦିର ଆକର୍ଷଣ । କେବଳ ଏତିକି ନୁହେଁ ଯେଉଁ ଆତ୍ମା ସୂକ୍ଷ୍ମାକାରରେ ଥିଲା ସେ ଆଜି ମଣିଷ ଆଖ୍ୟା ନେଇ ଏ ଜଗତରେ ଦେଖାଦେଲା ଏକ ନାମ ବହନ କରି । କାଳ ଗର୍ଭରେ ଯେ ବୀଜାକାରରେ ଥିଲା ସେ ଆସି ସ୍ଥୂଳଭାବେ, ଅତି ସ୍ଥୂଳଭାବେ ଆଶ୍ଚର୍ଯ୍ୟ ଭାବେ ଗୋଟାଏ ଅବୟବ ନେଇ ଦୃଶ୍ୟମାନ ହେଲା ଏହାଦ୍ୱାରା କଣ ସେମାନଙ୍କର ଆକାଙ୍‌କ୍ଷା ମେଣ୍ଟିଲା ? ନା, ସେମାନଙ୍କର ସ୍ଥୂଳଦେହ ମଧ୍ୟରେ ସହସ୍ର ଆକାଙ୍‌କ୍ଷା ବାହୁ ବିସ୍ତାର କଲା । ଆକାଙ୍‌କ୍ଷାର ପରିପୂରଣ ଲାଗି ସେମାନେ ପାଗଳଙ୍କ ଭଳି ସ୍ତ୍ରୀ, ପୁତ୍ର କନ୍ୟା ଧନ ରତ୍ନ, ଘର ଦ୍ୱାର କେତେ ନାହିଁ କେତେ ଦୁଇ ହାତରେ ମୁଷ୍ଟିବଦ୍ଧ କରିବାକୁ ଲାଗିଲେ । ତଥାପି କଣ ଏ ସମାଜର ଆକାଙ୍‌କ୍ଷା ପରି ପୂରଣ ହେଲା ? କେହି କହିଲା ମୋର ଯଥେଷ୍ଟ ହୋଇଛି—ମୁଁ ତୃପ୍ତ, ସୂକ୍ଷ୍ମାତି ସୂକ୍ଷ୍ମ ଗୋଟାଏ ବୀଜରୁ ମୁଁ ସ୍ଥୂଳ ଅବୟବ ବିଶିଷ୍ଟ ହୋଇ ଏହି ସ୍ଥୂଳ ଜଗତରେ ଆସି ଉପସ୍ଥିତ ହୋଇଛି ତାହାହିଁ ମୋର ଯଥେଷ୍ଟ ଏକଥା କେହି ମୁକ୍ତ କଣ୍ଠରେ ପ୍ରକାଶ କରି ପାରିଲେ ନାହିଁ । ସବୁ ସତ୍ତ୍ୱେବି ଆକାଙ୍‌କ୍ଷିତ ମନର ଆକାଙ୍‌କ୍ଷା ପରିପୂରଣ ହୋଇ ପାରିଲା ନାହିଁ । ସେ ପୁନର୍ବାର ଚାହିଁଲା ଆହୁରି ବଡ଼ ହେବି, ଆହୁରି ଭୋଗ କରିବି, ଆହୁରି, ଆହୁରି, ବହୁ ଆହୁରି ବାକି ଅଛି ମୋର । ଚକ୍ଷୁ, କର୍ଣ୍ଣ, ମନ ଏତେ ଜିନିଷ ତା ନିଜ ମଧ୍ୟରେ ପାଇ ମଧ୍ୟ ତାର ପାଇବାର ତୃଷ୍ଣା ମେଣ୍ଟିଲା ନାହିଁ । ସେ ଆହୁରି ପାଇବ, ହେବ ଆଉ ଆକାଙ୍‌କ୍ଷାକୁ ବହନ କରି ଭୋଗ ମଧ୍ୟକୁ ଲମ୍ଫ ପ୍ରଦାନ କରୁଛି ।

ଦ୍ରଷ୍ଟା, ଦୃଶ୍ୟ, ଦର୍ଶନ ଏହି ତ୍ରିପୁଟି ଭାବ ପୋଷଣ କରି ମାନବଗଣ ଦୃଶ୍ୟ ମଧ୍ୟରେ, ନାମରୂପ ମଧ୍ୟରେ ଅବଗାହନ କରିବାକୁ ଲାଗିଲେ । ଏହାଦ୍ୱାରା କି ପ୍ରକାର ପରିଣାମ ହେବ ତାହା ଦିନେ ବି ଟେସ ଚିନ୍ତା କରିବାକୁ ଚେଷ୍ଟା କଲେ ନାହିଁ । ଏହି ତ୍ରିପୁଟି ଭାବର ପ୍ରତୀକ-ରୂପେ ତୁମେ ଦେଖିଛ ନଷ୍ଟପ୍ରୁ ଦେବାଙ୍କ ହସ୍ତସ୍ଥିତ ତ୍ରିଶୂଳ । ଜୀବନର ଊର୍ଦ୍ଧ୍ୱ ଓ

ଅଧୋଗତିର ସ୍ୱପ୍ନଭୂମି ଏହି ଭୈରବୀ ରୂପିଣି ମାଉ ଶିର ଦେଶାର ଜଟାଜୁଟ । ଭୈରବୀ ଶକ୍ତିର ପ୍ରଭାବେ ମାନବଗଣ ଅସଂଖ୍ୟ ନାମ ରୂପଆଡ଼କୁ ଛୁଟି ଚାଲିଛନ୍ତି । ଅନ୍ନର ଆବଶ୍ୟକ, ଆନ୍ନର ବସ୍ତ୍ରର ଆବଶ୍ୟକ, ଖାଲି ଆକାଙ୍କ୍ଷାର ତୀବ୍ର ତାଡ଼ନାରେ ଶ୍ରେଷ୍ଠ ଜ୍ଞାନଯୁକ୍ତ ବିଶ୍ୱର ମାନବଗଣ ଧାଇଁ ଚାଲିଛନ୍ତି ଜୀବନର ଶ୍ରେଷ୍ଠତନ୍ତ୍ରକୁ ହେୟ ଅବହେଳିତ କରି । ନାମ ରୂପ ଆକାଙ୍କ୍ଷାର ପଛରେ, ଜାଗତିକ ଆକାଙ୍କ୍ଷା ପଛରେ ଛୁଟି ଚାଲିଛନ୍ତି ସମସ୍ତେ । କି ଭୟଙ୍କର ପରିଣାମ ମାନବ ସମାଜର ହୋଇଛି ତୁମେ ବୁଝିପାରୁଛ ନାରଦ ?

ନାରଦ ପୁନର୍ବାର ମୁଖ ଫେରାଇ ଜ୍ଞାନମୟ ବିଭୁ ଶିବଙ୍କ ଆଡ଼କୁ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲେ । ଶିବଙ୍କ ସ୍ଥାନରେ ଦେବୀ ଭୈରବୀ ଆବିର୍ଭୂତା । ଉଦୟକାଳୀନ ଭୟଙ୍କର ସୂର୍ଯ୍ୟଙ୍କ ଭଳି ଦେବୀଙ୍କର ଦେହ ରକ୍ତବର୍ଣ୍ଣ, କ୍ଷୌମ ଅର୍ଥାତ୍ ରେଶମୀ ବସ୍ତ୍ର ସେ ପରିଧାନ କରିଛନ୍ତି । ଗଳଦେଶରେ ମୁଣ୍ଡମାଳା ଏବଂ ସ୍ତନ ରକ୍ତାନୁଲିପ୍ତ । ଦେବୀଙ୍କ ହସ୍ତ ଚତୁଷ୍ଟୟରେ ଜପାମାଳା, ପୁସ୍ତକ, ଅଭୟମୁଦ୍ରା ଓ ବରମୁଦ୍ରା । କପୋଳ ଦେଶରେ ଅର୍ଦ୍ଧଚନ୍ଦ୍ର ସୁଶୋଭିତ । ଦେବୀଙ୍କ ନୟନତ୍ରୟ ରକ୍ତ ପଦ୍ମ ଭଳି ଶ୍ରୀ ବିଶିଷ୍ଟ, ମସ୍ତକରେ ରତ୍ନ ନିର୍ମିତ ମୁକୁଟ ଏବଂ ମୁଖରୁ ଈଷତ୍ ହାସ୍ୟ ବିଚ୍ଛୁରିତ ହେଉଛି ।

ନାରଦ ବାରମ୍ବାର ଦେବୀ ଭୈରବୀଙ୍କୁ ଅବଲୋକନ କରି ଚମତ୍କୃତ ହେଲେ । ଏହି ସେହି ଭୈରବୀ, ଯାହାଙ୍କର ଭୟଙ୍କର ଉଦର ବିଭିନ୍ନ ସ୍ୱରକୁ ବିଶ୍ୱର ପ୍ରତ୍ୟେକ ଜୀବ ନିଜର ବୋଲି ଗ୍ରହଣ କରିଛନ୍ତି । ଏ ଜୀବ ଜଗତର ସମ୍ମିଳିତ ସ୍ୱରହିଁ ମା' ଭୈରବୀଙ୍କର । ବ୍ରହ୍ମାଣୀ ରୂପରେ ସେ ଜପାମାଳା ଧାରଣ କରି ବିଶ୍ୱଚିନ୍ତାରେ ମଗ୍ନ । ପ୍ରତ୍ୟେକ ଜୀବ ମଧ୍ୟରେ ସ୍ଥିତ ବ୍ରହ୍ମଶକ୍ତି ତାହାଙ୍କ ଠାରୁ ନିର୍ଗତ । ସେ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ । ତେଣୁ ତାଙ୍କ ବାମ କରରେ ବିଦ୍ୟାର ସଙ୍କେତ ପୋଥି (ପୁସ୍ତକ) ଶୋଭା ପାଉଛି । ଜ୍ଞାନର ସଙ୍କେତ ମସ୍ତକ, ସେ କଣ୍ଠ ଦେଶରେ ସୁଶୋଭିତ । ରାଜରାଜେଶ୍ୱରୀର ସ୍ତନଯୁଗ୍ମ ରକ୍ତାନୁଲିପ୍ତ ହୋଇଥିବାରୁ ସେ ରାଜସିକ ଗୁଣର ଅଧିକାରିଣୀ । ତମଯୁକ୍ତ ରେଶମୀ ବସ୍ତ୍ରରେ ବିଶ୍ୱକୁ ସେ ଆଚ୍ଛାଦିତ କରି ରଖିଛି । ତମଃ ପ୍ରକୃତିରୁ କ୍ଷ୍ୟାନ୍ତ ନମିଭ (?) ଯେଉଁମାନେ ଦେବୀଙ୍କ ଶରଣାପନ୍ନ ସେମାନଙ୍କୁ ଦେବୀ ଅଭୟ ଦାନ କରୁଛନ୍ତି ଏବଂ ଯେଉଁମାନେ

ଦେବୀଙ୍କୁ ପ୍ରାର୍ଥନା କରୁନାହାନ୍ତି ଦେବୀ ସେମାନଙ୍କୁ ବର ପ୍ରଦାନ କରୁନାହାନ୍ତି । ରଜଗୁଣାନୁଲିପ୍ତ ହୃଦୟପୂର୍ଣ୍ଣ ସାଧକଙ୍କୁ ମଧ୍ୟ ଏହାକୁ ଆକର୍ଷିତ କରିଦେଲେ କରି ଦେଶର ମସ୍ତକମାନ ଜ୍ଞାନମୁଖି କରୁଅଛନ୍ତି ।

ଭୈରବ ଶକ୍ତି ଭୈରବୀ । ଭୈରବଙ୍କ ଠାରୁ ଭୈରବୀ ଶକ୍ତି ନିର୍ଗତ ହେଲା ପରେ ଭୈରବ ଶକ୍ତିହୀନ ହୋଇ ପଡନ୍ତନ୍ତି । ଯେଉଁ ଭୈରବୀ ଶକ୍ତି ଗଗନ ପବନ ମୁଖରିତ କରି ବିଶ୍ୱକୁ ଆବଦ୍ଧ କରି ରଖିଛି, ବିଶ୍ୱକୁ କ୍ଳାନ୍ତ କରି ରଖିଛି ସେହି ଶକ୍ତିର ଧ୍ୟାନ କରିବାକୁ ଯାଇଁ ନାରଦ ଗାଇ ଉଠିଲେ :—

ଉଦ୍ୟଦ୍‌ଭାନୁ ସହସ୍ର କାନ୍ତି ମରୁଣ କ୍ଷୌମାଂ ଶିରୋମାଳକାଂ,
ରକ୍ତା ଲିପ୍ତପୟୋଧରାଂ ଜପବଟୀଂ ବିଦ୍ୟାମଭୀତିଂ ବରମ୍ ।
ହସ୍ତାବ୍‌ଜୈର୍ଦ୍ଦଧତୀଂ ତ୍ରିନେତ୍ର ବିଲସଦ୍‌ବକ୍ତ୍ରାରବିନ୍ଦଶ୍ରିୟଂ ।
ଦେବୀଂ ବଦ୍ଧହିମାଂ ଶୁଭ୍ରରତ୍ନମୁକୁଟାଂ ବନ୍ଦେ ସମନ୍ଦସ୍ମିତାଂ ॥

ନାରଦ ପୁନଃ ପୁନଃ ଦେବୀ ଭୈରବୀଙ୍କୁ ପ୍ରଣାମ କରିବାକୁ ଲାଗିଲେ । ଦେବୀ ଭୈରବୀଙ୍କ ଅସୀମ ଶକ୍ତି ସେ ଉପଲବ୍ଧି କରିବାକୁ ଯାଇ ସ୍ୱପ୍ନଭଳି ଦେଖିଲେ, ସାରା ବିଶ୍ୱ କପରି ଜ୍ଞାନ ଶୂନ୍ୟ ହୋଇ ପଡ଼ୁଛି । ଜ୍ଞାନମସ୍ତ—ଶିବଙ୍କ ମଧ୍ୟରୁ ଶିବତ୍ୱ ଲୋପ ପାଉଛି । ଶିବତ୍ୱ ଲୋପ ପାଇବା ହେତୁ ବିଶ୍ୱ ଅଜ୍ଞାନରେ ପରିପୂର୍ଣ୍ଣ ହୋଇ ଉଠିଛି । ଜ୍ଞାନହୀନ—ମସ୍ତକ ବିହୀନ ସଦୃଶ ମାନବଗଣ ଧ୍ୱଂସ ମୁଖ ଗହ୍ୱରକୁ ଅଗ୍ନି ଦୃଷ୍ଟ ପତଙ୍ଗ ପରି ଛୁଟି ଚାଲିଛନ୍ତି । ପଥଭ୍ରଷ୍ଟ ମାନବର ଅନ୍ୟାୟ ଅମିତ ଯୋଗୁ ଦୈବ ଦୁର୍ବିପାକରେ ବିଶ୍ୱ ମଗ୍ନ ହୋଇ ଯାଉଛି । ଫଳରେ ଦେଖା ଦେଉଛି ମରୁଡ଼ି, ଦୁର୍ଭିକ୍ଷ ରୋଗ ଶୋକାଦି । ସ୍ଥାନେ ସ୍ଥାନେ ରାଷ୍ଟ୍ର ବିପ୍ଳବ ଘଟି ସାରା ବିଶ୍ୱକୁ ମୂଦ୍ୟମାନ କରି ପକାଉଛି । ମସ୍ତକ ବିହୀନ କବନ୍ଧ ନର୍ତ୍ତନରେ ବିଶ୍ୱ କ୍ଳାନ୍ତ ହୋଇ ପଡ଼ୁଛି । ଅଜ୍ଞାନ ତମସା ଗର୍ଭରୁ ମୁକ୍ତ ପାଇବାକୁ ସାଧୁ ସନ୍ଥମାନେ ବେଦୋକ୍ତ ଯଜ୍ଞ, ତନ୍ତ୍ରୋକ୍ତ ପୂଜାରେ ବ୍ୟାପୃତ ରହିଛନ୍ତି । ସାଧୁ ସନ୍ଥମାନଙ୍କର କାତର କରୁ, ଆକୁଳ ପ୍ରାର୍ଥନା ଶ୍ରବଣ କରି ମହା ଭୈରବୀ ଶକ୍ତି ଆକାଶ ମାର୍ଗରେ ଦୃଶ୍ୟମାନ ହେଲେ । ଚତୁର୍ଦ୍ଦିଗର ବିଭିନ୍ନ ଶବ୍ଦ ଏକତ୍ରୀତ ହୋଇ ଏକ ମହାଭୟଙ୍କର ଶବ୍ଦରେ ବିଶ୍ୱକୁ ମୁଖରିତ କଲା । ତାହାରି ମଧ୍ୟରେ ଚନ୍ଦ, ଘଣ୍ଟାର ଘଣ୍ଟା ସ୍ୱର -ଯୋଗୀମାନଙ୍କୁ ଆନନ୍ଦ ପ୍ରଦାନ କଲା ଏବଂ ସେହି ସ୍ୱର ଅନ୍ୟାୟ ଅସତ୍ ମାର୍ଗଗାମୀଙ୍କୁ ଚଣ୍ଡ ଘଣ୍ଟା

ଭଳି ପ୍ରଶାନ୍ତ ହେଲା । ବାଜି ଉଠିଲା ଶ୍ମଶାନ ଭୈରବଙ୍କର ଡମ୍ବରୁ, ବାଜି ଉଠିଲା ଶିଙ୍ଗା । ମିଶ୍ରିତ ହେଲା ବପୁସ, ଗୃଧ୍ର, ଭେରଣ୍ଡାଙ୍କ ରବ । ଶଙ୍କିତ ହୋଇ ଉଠିଲା ନାରଦଙ୍କ ମନ, ପ୍ରାଣ । ସେ ଅନୁଭବ କଲେ ପ୍ରକୃତ ଭକ୍ତିଭାବ ଜାଗ୍ରତ କରିବାକୁ ହେଲେ ଭୟଙ୍କର ର ଆବଶ୍ୟକତା ଅଛି । ଭୟ ନ ଆସିଲେ ହୃଦୟରେ ଭୈରବୀ ଆବିର୍ଭୂତା ହେବେ ନାହିଁ । ବିନା ଭୈରବୀରେ ନାମ, ରୂପର ପ୍ରକାଶ ଅସମ୍ଭବ । ସେହି ସଷ୍ଟା ସୂକ୍ଷ୍ମ ଆକାରରେ ରହିଯିବ, ସ୍ଥୂଳହୋଇ ବିଶ୍ୱରେ ପ୍ରକାଶ ପାଇବା କଳ୍ପନା କଳ୍ପନାରେ ରହିଯିବ ।

ଜୀବର ଏହିମାତ୍ର ଘୋର ଅନ୍ଧକାର ରାତ୍ରି ଅବସାନ ହେଲା । ଭୈରବୀଙ୍କ ଆବିର୍ଭାବରେ ରାତ୍ରିର ତମସା ବିଦୂରିତ ହେଲା । ସେଥି ନମିତ୍ତ ଅମୃତ ମନ୍ଥୀର ଅମୃତ ପୂର୍ଣ୍ଣ ସ୍ତନ ଯୁଗ୍ମ ରକ୍ତ ବର୍ଣ୍ଣରେ ରଞ୍ଜିତ ହୋଇଛି । ଘନ କାଳିମା ପରେ ରକ୍ତଛଟା ବିଶ୍ୱକୁ ସିନ୍ଦୂରିମା ଆଭାରେ ରୂପାୟିତ କରିଛି । ହେଲା ଭୋର୍ । ଜାଗ ଜଗତବାସୀ ଏହି ବ୍ରାହ୍ମ ମୁହୂର୍ତ୍ତରେ; ରାତ୍ରି ଦିବସର ମଧ୍ୟଗତ ଏହି ସନ୍ଧି କ୍ଷଣରେ । ବାସନା ଯୁକ୍ତ ଆତ୍ମା ଅବ୍ୟକ୍ତ ମହାଶକ୍ତି କାଳିକାଙ୍କ ମଧ୍ୟରେ ଆବଦ୍ଧ ଥିଲା । ତାସ ରୂପରେ ହିଁ ତାର ବୈଶିଷ୍ଟ୍ୟ ପ୍ରକାଶ ପାଇଲା, ତର୍ଦ୍ଧ୍ୱ ଅଖଣ୍ଡ ବ୍ରହ୍ମକୁ ତାସ ଶକ୍ତି ଖଣ୍ଡ ଖଣ୍ଡ କଲା ସେହି ଖଣ୍ଡ ଖଣ୍ଡର ରୂପ ଦେବାକୁ ଆସିଲେ ଷୋଡ଼ଶୀ । ତତ୍ପରେ ଆସିଲେ ଭୁବନେଶ୍ୱରୀ ସେହି ଖଣ୍ଡମାନଙ୍କରେ ଜ୍ଞାନ ବିକାରଣ କରିବାକୁ । ତାହା ପୁଣି ଆତ୍ମ ପ୍ରକାଶ କଲା ଭୈରବୀ ରୂପରେ । ରାତ୍ରି ଦିବସର ସନ୍ଧି କ୍ଷଣରେ ସେହି ମହାଭୈରବୀଙ୍କୁ ନାରଦ ନତଶିର ହୋଇ ପ୍ରଣାମ ପୂର୍ବକ ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କଲେ । ଭୈରବୀଙ୍କର ସେହି ମହାମନ୍ତ୍ର, ଯାହାର ସ୍ମରଣରେ ଦୁଃଖ ରୂପକ ଅମାନିଶା ବିଦୂରିତ ହୋଇ ଏକ ଅପୂର୍ବ ଭାବରେ ପ୍ରତ୍ୟେକଙ୍କୁ ଉଦ୍ଭାସିତ କରେ । ଓଁ ଐଂ ହ୍ରୀଂ ଶ୍ରୀଂ କ୍ଲୀଂ ଭୈରବ୍ୟୈ ସ୍ୱାହା ଭୈରବୀଙ୍କର ବିଭିନ୍ନ ନାମ ଅଛି । ତନ୍ମଧ୍ୟରୁ ତ୍ରିପୁର ଭୈରବୀ ନାମ ଅନ୍ୟତମ । ସୃଷ୍ଟି ସ୍ଥିତି ଲୟ କାରିଣୀ ହେତୁ ଦେବୀ ତ୍ରିପୁର ଭୈରବୀ ନାମେ ବିଦିତା । ତନ୍ତ୍ରାର୍ଥୀମାନେ ଭୈରବୀ ଯନ୍ତ୍ର ଉପରେ ଉପବେଶନ କରି ତନ୍ତ୍ର ଜପ କରିଥାନ୍ତି । ଭୈରବୀ ତନ୍ତ୍ର ଉପରେ ଉପବେଶନ ନ କଲେ ଭୈରବ ହୋଇ ପାରନ୍ତି ନାହିଁ କିମ୍ବା ଦେବୀଙ୍କ ମନ୍ତ୍ର ଜପକରି କୌଣସି ଫଳ ପାଇ

ପାରନ୍ତି ନାହିଁ । ଉତ୍କଳଦେଶର ପୁରୁଷୋତ୍ତମ କ୍ଷେତ୍ରରେ ଦେବୀ ଭୈରବୀ ବିମଳା ନାମରେ ନାମିତା ହେବେ । ସେ ହେବେ ମହାଭୈରବ ଜଗନ୍ନାଥଙ୍କ ଶକ୍ତି ।

ଅଦ୍ଭୂତ ମହାଶକ୍ତି ପ୍ରଭାବରେ ସହସା ସେହି ଭୟଙ୍କରତା ଅପସରି ଆସିଲା । ପ୍ରକାଶ ପାଇଲେ ଜ୍ଞାନର ବାସ୍ତବ ରୂପ ଶିବ । ଯେଉଁ ଦେବୀଙ୍କ ପ୍ରଭାବରେ ଜ୍ଞାନମୟ ଶିବ ନିଶ୍ଚେଷ୍ଟ ହୋଇ ପଡ଼ିଥିଲେ, ଅଜ୍ଞାନ ତମସା ଘୋଟି ଯାଇଥିଲା ଚରାଚରକୁ ସେହି ଶିବ ଆତ୍ମ ପ୍ରକାଶ କଲେ ପୁନର୍ବାର । ମହାଜ୍ଞାନୀ ଶିବଙ୍କୁ ପ୍ରଶ୍ନବାଚୀ ଚକ୍ଷୁରେ ନାରଦ ଚାହିଁଲେ କିଛିକ୍ଷଣ ।

ଶିବ ତାଙ୍କ ଗମ୍ଭୀର ଆନନରେ ମୃଦୁହାସ୍ୟ ଖେଳାଇ କହିଲେ, ଭୈରବୀ ସ୍ୱରୂପିଣୀ ଦେବୀ ସତୀଙ୍କୁ ତୁମେ କଣ ଦର୍ଶନ କଲ ନାରଦ ।

ନାରଦ ବିସ୍ମୟାବିଭୂତ ହୋଇ କହିଲେ, ସେହି ଭୟଙ୍କର ରୂପା କେଶୀ କଣ ମା' ସତୀ ।

ପରମାତ୍ମା ଶିବ କହିଲେ ସେହି ମହାଶକ୍ତି ପରଶରେ ତ ମୁଁ ମହା ଭୈରବ । ତୁମେ ସେହି ମହା ଭୈରବୀଙ୍କୁ ଦେଖି ଏବଂ ତାଙ୍କର ଭୟଙ୍କର ନାଦ ଶୁଣି କ୍ଷୁଦ୍ର ଶିଶୁ ଭଳି ଭୟ ପ୍ରାପ୍ତ ହେଲେ ପୁନର୍ବାର ଅନ୍ୟାନ୍ୟ ମହାବିଦ୍ୟାମାନଙ୍କୁ ଦେଖିବ କିପରି ? ପ୍ରତ୍ୟେକ ମହାବିଦ୍ୟାହିଁ ସେହି ଦେବୀ ସତୀ ! ସେ ଯେତେ ଭୟଙ୍କର ହେଉ ତାଙ୍କୁ 'ମା' ବୋଲି ମନେ କଲେ ତାଙ୍କର ସେହି ଭୟଙ୍କରତା ବିଦୂରିତ ହୁଏ । ତାଙ୍କର ସେହି ଭୟଙ୍କର ମୁଖରେ କମନୀୟତା ଫୁଟି ଉଠେ । ସନ୍ତାନର ଶୁଭ ନିମିତ୍ତ ଶତ୍ରୁମାନଙ୍କୁ ଧ୍ୱଂସ କରିବାକୁ ସେ ଧାଇଁ ଆସେ ଭୟଙ୍କର ମୂର୍ତ୍ତି ଧରି । ହେଉ ଲକ୍ଷ୍ୟକର ମଙ୍ଗଳକାରିଣୀ ସହ ମହାଗ୍ରହଙ୍କୁ । ଦେବୀ ଛିନ୍ନମସ୍ତା ତାଙ୍କୁ କିପରି ନିଶ୍ଚେଷ୍ଟ କରି ପକାଇଛନ୍ତି । ଏପରିକି ମହାଗ୍ରହ ରାହୁର ସମସ୍ତ ସତ୍ତ୍ୱାକୁ ଲୋପକରି ସନ୍ତାନର ମଙ୍ଗଳ ନିମିତ୍ତ କି ଭୟଙ୍କର ମୂର୍ତ୍ତି ଧାରଣ କରିଛି ସେ ।

ନାରଦ ଶିବଙ୍କ ନିର୍ଦ୍ଦେଶ ମତେ ମହାଶୂନ୍ୟକୁ ଲକ୍ଷ୍ୟକରି ଦେଖିଲେ ଭୟଙ୍କର ରାହୁ ଗ୍ରହର ସମସ୍ତ ଶକ୍ତିକି ଆପ୍ଲୁତ କରି ଏକ ଅଦ୍ଭୂତ ଭୟଙ୍କର ରୂପ ଦଣ୍ଡାୟମାନା । ଇସ୍ କି ଭୟଙ୍କର 'ମା'ର

ଏ ମୂର୍ତ୍ତି । ଏଭଳି ଏକ ମୂର୍ତ୍ତିର କଳ୍ପନା ଯେ କେହି କେବେ କରିପାରେ ଏହା ମଧ୍ୟ ନାରଦଙ୍କୁ ଅସମ୍ଭବ ପରି ବୋଧ ହେଲା । ପିତା ମହାଜ୍ଞାନୀ ଶିବ, ସନ୍ତାନର ମଙ୍ଗଳ ନିମିତ୍ତ ଦେବୀ ଷଷ୍ଠୀଙ୍କର ଆବିର୍ଭାବ ହୋଇ କରିଥିଲେ । ସନ୍ତାନ ନିମିତ୍ତ ମା କଣ ଏରୂପ ଧରିପାରେ ? ବିସ୍ମିତ, ଭୟଙ୍କର, ଲୋଳଜିହ୍ୱା ବିଶିଷ୍ଟ ଛିନ୍ନ ମସ୍ତକ ଦେବୀ ନିଜର ବାମକରେ ଧାରଣ କରିଛନ୍ତି । ସଦ୍ୟ ଛିନ୍ନ ମସ୍ତକ ସ୍ୱକଣ୍ଠ ଦେଶରୁ ରୁଧିର ଧାରା ନିର୍ଗତ ହେଉଛି ତ୍ରିଧାରାରେ । ଏକ ଧାରା ବାମହସ୍ତସ୍ଥିତ ଛିନ୍ନ ମସ୍ତକ ପାନ କରୁଛି । ଏହି ମସ୍ତକର କେଶ ଆଲୁଳାୟିତ ଓ ନାନାବିଧ ପୁଷ୍ପରେ ଶୋଭିତ । ଦେବୀଙ୍କର ଦକ୍ଷିଣ ହସ୍ତରେ କର୍ତ୍ତ୍ରିକା ଓ କଣ୍ଠ ଦେଶରେ ନରମୁଣ୍ଡ ନିର୍ମିତ ମାଳା; ଦିଗମ୍ବରା ଏବଂ ଭୟଙ୍କରା କୃତି । ଦକ୍ଷିଣପଦ ଅଗ୍ରଭାଗେ ଏବଂ ବାମପଦ କୁଞ୍ଚିତ ପଶ୍ଚାତରେ ସ୍ଥିତ । ଏହି ଛିନ୍ନମସ୍ତା ଦେବୀ ଦଣ୍ଡାୟମାନ ହୋଇଛନ୍ତି ବିପରୀତ ରତିମଗ୍ନା ରତି ଓ କାମଦେବଙ୍କ ଉପରେ । ଷୋଡ଼ଶ ବର୍ଷୀୟା ଯୁବତୀ ଭଳି ଏହି ଦେବୀଙ୍କର ସ୍ତନଦ୍ୱୟ ସ୍ଥୂଳ ଏବଂ ଉନ୍ନତ ଡାକିନୀ ବର୍ଣ୍ଣିନୀ ନାମ୍ନୀ ନାୟିକାଦ୍ୱୟ ଦେବୀଙ୍କ ବାମ ଏବଂ ଦକ୍ଷିଣ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ଦେବୀଙ୍କ ଗଳଦେଶରୁ ନିର୍ଗତ ଅପର ଦୁଇ ରୁଧିରଧାରା ପାନ କରୁଛନ୍ତି । ଏହି ବର୍ଣ୍ଣିନୀ, ସୌମ୍ୟାକୃତି, ରକ୍ତବର୍ଣ୍ଣା, ମୁକ୍ତକେଶୀ ଏବଂ ବିବସନା । ବାମହସ୍ତେ ସ୍ୱମସ୍ତକ, ଦକ୍ଷିଣହସ୍ତେ କର୍ତ୍ତ୍ରିକା ଗଳଦେଶରେ ସର୍ପ ନିର୍ମିତ ଯଜ୍ଞୋପବୀତ ଧାରଣ କରିଛନ୍ତି ଏହି ବର୍ଣ୍ଣିନୀ ଦେବୀ ବର୍ଣ୍ଣିନୀ ଯାଜ୍ୱଲ୍ୟମାନ ତେଜଃ ସ୍ୱରୂପା । ଏହାଙ୍କର ଦକ୍ଷିଣପଦ ଅଗ୍ରଭାଗେ ଏବଂ ବାମପଦ କୁଞ୍ଚିତ ପଶ୍ଚାତରେ ସ୍ଥିତ । ଦେବୀଙ୍କ ବାମଭାଗରେ ଡାକିନୀନାମ୍ନୀ ଯେଉଁ ନାୟିକା ଦଣ୍ଡାୟମାନା ତାହାଙ୍କ ଅଙ୍ଗରାଗ କଳ୍ପାନ୍ତକାଳୀନ ସୂର୍ଯ୍ୟ ଓ ଅଗ୍ନି ଭଳି ସମୁଜ୍ଜ୍ୱଳ ଏବଂ ଜଟାଜୁଟ ବିଦ୍ୟୁତ୍ ଭଳି ଦେବୀପ୍ୟମାନା । ଡାକିନୀ ନାୟିକା ତ୍ରିନୟନା, ଦନ୍ତରାଜି ଅତି ଶୁଭ୍ର ଏବଂ କରାଳ ଯୋଗୁ ଅତି ଭୟଙ୍କର ସ୍ତନଦ୍ୱୟ ଅତିସ୍ଥୂଳ ଓ ଉନ୍ନତ । ମୁକ୍ତକେଶୀ, ନଗ୍ନା ଓ ଭୟଙ୍କରାକୃତି । ଲୋଳଜିହ୍ୱା ବୃହତ୍, ଗଳଦେଶରେ ନରମୁଣ୍ଡ ନିର୍ମିତ ମାଳା, ବାମ ହସ୍ତରେ ନରମୁଣ୍ଡ ଓ ଦକ୍ଷିଣ ହସ୍ତରେ କର୍ତ୍ତ୍ରିକା ଏହି ନାୟିକା ଦେବୀଙ୍କ କର୍ତ୍ତିତ ଗଳ ଦେଶରୁ ନିର୍ଗତ ଏକ ରୁଧିରଧାରା ପାନ କରୁଛନ୍ତି । ଉକ୍ତ ଭୟଙ୍କରା ବର୍ଣ୍ଣିନୀ ଓ ଡାକିନୀ ନାୟିକାଦ୍ୱୟ ଦେବୀ ଛିନ୍ନମସ୍ତାଙ୍କ ସେବାରେ ନିରତ ।

ନାରଦଙ୍କର ଆପାଦ ମସ୍ତକ ଶିହରି ଉଠିଲା । ଚନ୍ଦ୍ରପ୍ରଭ ଦର୍ଶନରେ ଶାଳଗ୍ରାମ ଯେଉଁଳି ଆଛନ୍ନ ହୁଅନ୍ତି ତାଙ୍କୁ ସେହିଭଳି ଲାଗିଲା । ମନେହେଲା ସତେ ଯେପରି ଚତୁର୍ଦ୍ଦିଗରେ ଅନ୍ଧକାର ଗର୍ଜନ କରୁଛି । ଘୋଷଣ ତମସା ବକ୍ଷରେ ସୂର୍ଯ୍ୟଭଳି ତେଜ ଧାରଣକରି ମହାଭୟଙ୍କରରୂପା ଦେବୀ ଛିନ୍ନମସ୍ତା ଦଣ୍ଡାୟମାନ ହୋଇଛନ୍ତି । ଦେବୀଙ୍କ ଭଳି ଉଭୟପାର୍ଶ୍ଵର ନାୟିକାଦ୍ଵୟ କପାଇଁ ଜନନୀ ଏଭଳି ଭୟଙ୍କର ରୂପ ଧାରଣ କରିଛି ତାହା ଚିନ୍ତାକରି ଜାଣିବାକୁ ଅସମର୍ଥ ହେଲେ ନାରଦ ।

ଜ୍ଞାନୀ ଶିବ କହିଲେ, ସ୍ଥୂଳରେ ନାମ ରୂପରେ ପରିଣତ ହେଲେ କଭଳି ଅଘଟଣ ଘଟେ ତାହା ଏହି ଛିନ୍ନମସ୍ତା ରୂପରୁ ଦେଖୁଛ ନାରଦ ! ଏଠାକୁ ଏହି ସ୍ଥୂଳଜଗତକୁ ଆସିଲେ କାମନାର ଦାସ ହେବାକୁ ହୁଏ, ସେଥିନିମିତ୍ତ ଦେବୀଙ୍କ ପାଦତଳେ କାମନାର ମୂର୍ତ୍ତିବିଗ୍ରହ ଏହି କାମଦେବ ଓ ରତି ଦେବୀ । କାମନାର ଅଧିନ ଏ ଜଗତ, ପ୍ରତ୍ୟେକର ଜୀବାତ୍ମା । ସେଥିନିମିତ୍ତ କାମିନୀର ଜନ୍ମରେ ପୁରୁଷାକାରର ସ୍ଥାନ ଏବଂ ପୁରୁଷାକାର କାମିନୀର ବଶ । ଅସଂଖ୍ୟ କାମନା, ଅସଂଖ୍ୟ ବାସନା ବଢ଼ିଯାଏ ଲାଳସାର ବଶ ଏ ଜଗତ । ଯେଉଁମାନେ କାମନା ଦ୍ଵାରା ଅଭିଭୂତ, ଦିଗ୍‌ଭ୍ରାନ୍ତ, ନଷ୍ଟେନ୍ଦ୍ରିୟ ସେମାନେ ଅଜ୍ଞାନ ବସ୍ତୁଭୋଗୀ ଶୂକରତୁଲ୍ୟ । କି ସ୍ତ୍ରୀ କି ପୁରୁଷ ପ୍ରତ୍ୟେକଙ୍କ ମନରେ ନାରୀ ନର ଅବସ୍ଥାନ କରିଛନ୍ତି । ହୀନ ପ୍ରବୃତ୍ତିକୁ ନାରୀ, ଉଚ୍ଚ ପ୍ରବୃତ୍ତିକୁ ପୁରୁଷ ବୋଲି ଧରାଯାଏ । ନାରୀର ସ୍ଥିତପ୍ରଜ୍ଞ ଅବସ୍ଥାକୁ ଶିବ କୁହାଯାଏ ଏବଂ ଶିବଙ୍କର କାର୍ଯ୍ୟକୁ ଶକ୍ତି କୁହାଯାଏ । ଏହି ଶିବ ବା ଜ୍ଞାନକୁ ଭୋଗାଭିମୁଖୀ କରିବାକୁ ଟାଣିନିଏ ଶକ୍ତି ଉଚ୍ଚ ସ୍ତରରୁ ନୀଚ ସ୍ତରକୁ । କାମ, କ୍ରୋଧ, ଲୋଭ, ମୋହାଦି କାମନା ଦ୍ଵାରା ପଥଭ୍ରଷ୍ଟ ହୋଇ ଉଦ୍‌ଭ୍ରାନ୍ତଙ୍କ ପରି ଘୂର୍ଣ୍ଣାୟମାନ ଏ ଜଗତ । ଏ ଜଗତରେ ତୁମର କେହି ନାହିଁ, ତୁମେ ମଧ୍ୟ କାହାର ନୁହଁ, ମାନସମ୍ମାନ ଧନରତ୍ନ ସବୁ ମିଥ୍ୟା, କ୍ଷଣକ ପାଇଁ ମଧ୍ୟ ସତ୍ୟ ନୁହଁ କାରଣ ସତ୍ୟ କେବେ ଲୁପ୍ତ ହୁଏ ନାହିଁ ଏହା ଜାଣି ମଧ୍ୟ ପ୍ରତ୍ୟେକ ସେହି ସହସ୍ର କାମନା, ବାସନା ମଧ୍ୟକୁ ଲମ୍ଫପ୍ରଦାନ କରି ହା ହତୋସ୍ମିରେ ଦଗ୍ଧୀଭୂତ ହୋଇଥାଆନ୍ତି । ମିଥ୍ୟା, ଶଠତା, ଧୋକାବାଜି, ମାନବିକତାକୁ ଯେତେ କଷ୍ଟ ଦେଲେ ମଧ୍ୟ ମାନବ ବାଧ ଶିଶୁ ଭଳି ସେହି ଅଗ୍ନିରେ ଆତୋଇଯାଏ ଏହି ଛିନ୍ନମସ୍ତା ମହାବିଦ୍ୟାଙ୍କ ପ୍ରଭାବରେ

ମୁଁ ଶିବ, ଜ୍ଞାନର ସମସ୍ତ ସତ୍ତା ମୋ ମଧ୍ୟରେ ଶାୟମାନ, ତଥାପି ଏହି ଛିନ୍ନମସ୍ତା ମହାବିଦ୍ୟାଙ୍କ ପ୍ରଭାବ କଠିଣ ଉକ୍ତିରେ ଟାଣିନେଲା ଭଳି ମୋତେ ଟାଣିନେଲା ସଙ୍ଗବିଚ୍ଛେଦ ମହାଦୁଃଖକୁ ।

ଅନ୍ୟର ପରିତୃପ୍ତି ନିମିତ୍ତ ବା ଅନ୍ୟ ମୁହଁରେ ତୃପ୍ତିର ହସ ଟିକିଏ ଦେଖିବାକୁ କଠିନ ପରିଶ୍ରମଦ୍ୱାରା ପ୍ରତ୍ୟେକ ପ୍ରତିଦିନ ନିଜର ଶକ୍ତିକୁ ଅପଚୟ କରିଚାଲିଛନ୍ତି । କାରଣ କେହି ସ୍ଥିତପ୍ରଜ୍ଞ ନୁହନ୍ତି, କେହି ସ୍ଥିରବୁଦ୍ଧି ନୁହନ୍ତି ବୋଲି ପରକୁ ଖୁସି କରାଇବାକୁ ଏତେ ବ୍ୟସ୍ତ । ବୁଦ୍ଧି ତୁମର ସ୍ଥିର ନାହିଁ ଅର୍ଥାତ୍ ମସ୍ତିଷ୍କ ତୁମର ସ୍ଥିର ନାହିଁ । ସେଥିନିମିତ୍ତ ଦେଖ ଦେବୀଙ୍କ ମସ୍ତକ ଛିନ୍ନ । କେବଳ ଏତିକି ନୁହେଁ ପରିଜନ ବର୍ଗଙ୍କୁ ପରିପୁଷ୍ଟ କରିବା ନିମିତ୍ତ ନିଜର ଜୀବନୀଶକ୍ତି କ୍ଷୟ କରି ଉପାର୍ଜନ ପୂର୍ବକ ସେମାନଙ୍କୁ ଅଧିକ ଭାଗଦାନ କରି ନିଜେ କିଛି ଅଂଶ ଗ୍ରହଣ କରିବା ହେତୁ ଦେବୀଙ୍କର ରକ୍ତପାନ ଦୃଶ୍ୟ ଦୃଶ୍ୟମାନ ହେଉଛି ଏବଂ ଅଧିକ ଭାଗ ପରିଜନଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ହୋଇଛି । ତେଣୁ ଦୁଇପାର୍ଶ୍ୱରେ ବର୍ଣ୍ଣିନୀ, ଡାକିନୀ ପରିଜନଙ୍କ ଭଳି ଦଣ୍ଡାୟମାନ ହୋଇଛନ୍ତି । ସେହି ଛିନ୍ନ ମସ୍ତକଟି ହେଲା ବିଭ୍ରାନ୍ତ ମସ୍ତିଷ୍କର ପରିଚୟ ।

ବହୁଜନ୍ମ ଏହି ଛିନ୍ନମସ୍ତାଙ୍କ କବଳରେ ନିଷ୍ପେଷିତ ହୁଏ ଯେଉଁ ଆତ୍ମା ମୃତ୍ୟୁ ପରେ ଆଉ ଶରୀର ଗ୍ରହଣ କରିବ ନାହିଁ ବୋଲି ଏହି ଭୂପୃଷ୍ଠରୁ ଅନ୍ଧକାର କୁଜ୍ଝଟିକା ପଥଦେଇ ପିତୃଯାନ ସେଠାରୁ ଦେବଯାନ ଏବଂ ବ୍ରହ୍ମଯାନ ଆଦିକୁ ଗମନ ପୂର୍ବକ ଆତ୍ମାକୁ ବ୍ରହ୍ମପଦରେ ଅଭିଷିକ୍ତ କରିଥାଏ ଏବଂ ଜ୍ଞାନଭ୍ରଷ୍ଟ ହୋଇ ସେହି ଆତ୍ମା ଏକ ନୂତନ ଜଗତ ସୃଷ୍ଟିରେ ଅକୃତକାର୍ଯ୍ୟ ପୂର୍ବକ ପ୍ରତ୍ୟାବର୍ତ୍ତନ କରେ ପୁନର୍ବାର ଏହି ଭୂପୃଷ୍ଠକୁ ଏକ ମହାମାନବ ହେବାକୁ । ଯେଉଁ ଆତ୍ମାଗଣ ଧନୀ, ମାନୀ, ଯଶସ୍ୱୀ ଆଦି ହେବାକୁ ବହୁ ଆକାଙ୍‌କ୍ଷା ସହିତ ଅବତୀର୍ଣ୍ଣ ହୁଅନ୍ତି ସେହି ଆତ୍ମାଗଣ ଛିନ୍ନମସ୍ତା ମହାବିଦ୍ୟାଙ୍କ ପ୍ରଭାବରେ ବି ଧର୍ଷିତ ହୁଅନ୍ତି । ବହୁ ଆକାଙ୍‌କ୍ଷା ଯୁକ୍ତମନ ଦଣ୍ଡାୟମାନ ହୁଏ ଛିନ୍ନମସ୍ତା ହୋଇ । ଯେ ଭୈରବୀ ମହାବିଦ୍ୟାଙ୍କ କବଳରେ ପତିତ ହୋଇ ଆତ୍ମପ୍ରକାଶ କଲା ଏହି ଜଗତ ମଧ୍ୟରେ ସେ ପୁଣି ଛିନ୍ନମସ୍ତଙ୍କ କବଳରେ ପଡ଼ି ବହୁ ଆକାଂକ୍ଷା ଯୁକ୍ତ ହୋଇ ଛିନ୍ନମସ୍ତ ପରି ଠିଆ ହେଲା ଭୟଙ୍କର ରୂପଧରି । ଦିବସର ଶେଷ ଯାମର ପଦାର୍ପଣ କଲେ ମହାବିଦ୍ୟା କାଳିକା ରାତି ରୂପରେ ।

ପୁନର୍ବାର ଯେଉଁ ଭୈରବୀଶକ୍ତି ଅନ୍ଧକାର ଗର୍ଭରେ ଲୁକ୍କାୟିତ ସେହି ଆତ୍ମାକୁ ରୂପଦେଇ ବିଶ୍ୱ ବକ୍ଷରେ ସୂର୍ଯ୍ୟାଲୋକକୁ ଟାଣିଆଣିଲି ସେହିପରି ଆତ୍ମା ମୋହମାୟା ମଧ୍ୟରେ ଆବଦ୍ଧ ହୋଇ ବହୁ ଆକାଙ୍କ୍ଷାଯୁକ୍ତ ହେଲି ଛିନ୍ନମସ୍ତାଙ୍କ ପ୍ରଭାବରେ ଠିକ୍ ଛିନ୍ନମସ୍ତାଙ୍କ ଭଳି । ଦିଗଭ୍ରାନ୍ତ ପଥଭ୍ରଷ୍ଟ ଜ୍ଞାନୀମାନଙ୍କର ଆତ୍ମା ଶୁଭ୍ରଜ୍ଞାନାଲୋକ କୁଜ୍ଝଟିକାର ଧୂସର ଆବରଣ ତଳେ ଆତ୍ମଗୋପନ କଲା । ଜନ୍ମ ହେଲା ମାୟାର । ସୀମାକାରରେ ଥିବା ଜୀବନ ଆତ୍ମପ୍ରକାଶ କଲା ବିଭିନ୍ନ ରୂପରେ । ଏ ହିମାଳୟର କୈଳାସପୁରୀ, ସ୍ରୋତସ୍ୱିନୀ ଗଙ୍ଗା, ବୃକ୍ଷ ପତ୍ର, ପୁଷ୍ପ, ଫଳ ଆଦି ଚିରସ୍ଥାୟୀ ନୁହେଁ । ଏହା ମାୟା ହେଲେ ମଧ୍ୟ ସ୍ଥିତିଥିବା ପର୍ଯ୍ୟନ୍ତ ସତ୍ୟ ରୂପେ ପ୍ରତିପାଦିତ ହୁଏ । ସତ୍ୟ ବୋଲି କଥିତ ଯେଉଁ ଆତ୍ମା ବା ଜୀବ ତାକୁ ପରାଶକ୍ତି ମୂଳପିଣ୍ଡ ରୂପେ ଗ୍ରହଣ କରି ବିଭିନ୍ନ ଅଭିନୟ କରିଚାଲେ । ବହୁ ସହସ୍ର ରୂପ ନେଇ ବହୁଲକ୍ଷ ବର୍ଷର ଏହି ଅଭିନୟ ଚାଲେ ସେହି ଆଦିଶକ୍ତିଙ୍କ ପ୍ରଭାବରେ ।

କୌଣସି କୌଣସି ସାଧକ ମହାମାୟା ଛିନ୍ନମସ୍ତାଙ୍କୁ ଆତ୍ମଦାନର, ଆତ୍ମତ୍ୟାଗର ଜ୍ୱଳନ୍ତ ପ୍ରତୀକ ବୋଲି ଭାବି ଧ୍ୟାନ କରନ୍ତି । ମାତୃସାଧକ ପକ୍ଷରେ ଏଭଳି ଧାରଣା ବାସ୍ତବିକ୍ ସମ୍ଭବ । ସନ୍ତାନ ନିମନ୍ତେ ମା'ର ସମସ୍ତ ଶକ୍ତି ବ୍ୟୟକରିବା ଅଲୌକିକ ନୁହେଁ, ଅସମ୍ଭବ ମଧ୍ୟ ନୁହେଁ । ଯେଉଁ ଶକ୍ତି ତାର ସନ୍ତାନମାନଙ୍କ ନିମିତ୍ତ ସ୍ୱହସ୍ତରେ ସ୍ୱ ମସ୍ତକ ଛିନ୍ନକରି ନିଜ ଶକ୍ତିରେ ସନ୍ତାନମାନଙ୍କୁ ବଳୀୟାନ କରେ ସେହିଁ ମାତୃଶକ୍ତି । ଯୁଗ ଯୁଗ ଧରି ସାଧକମାନେ ସେହି ମାତୃଶକ୍ତିର ସାହାଯ୍ୟ ନିମିତ୍ତ ଧ୍ୟାନମଗ୍ନ ଏହାହିଁ ମାତୃଶକ୍ତିର କଥା, ଜନନୀର କଥା । ଶକ୍ତି ଯଦି ନିଜର ପରିଚୟ ଦେବାକୁ ଆସି ତାର ମୋହଗ୍ରସ୍ତ ସନ୍ତାନକୁ ଆହ୍ୱାନ କରି କହେ ଦେଖିପାରୁଛୁ, ଚିହ୍ନିପାରୁଛୁ, ତୁ ତୋର ମା କୁ ? ତୋ ପାଇଁ କେତେ ନିମ୍ନ ଦେଶକୁ ଅବତରଣ କରି, ତୋ ପାଇଁ ମୋହଗ୍ରସ୍ତ ହୋଇ କି ଅପୂର୍ବ ଆତ୍ମତ୍ୟାଗ କରିପାରେ ତୋ ଜନନୀ । ତୁ କେବେ କଳ୍ପନା କରିଛୁ ? ତଥାପି ହଣ ତୁ ଚିହ୍ନି ପାରୁନୁ ତୁ ତୋ ମା'କୁ ?

'ମା' ସନ୍ତାନ ପାଇଁ ଯେତିକି ମୋହଗ୍ରସ୍ତ ହୋଇଛି ସନ୍ତାନ କଣ ତାହା ଠାରୁ କମ୍ ? ମୋହଗ୍ରସ୍ତ ଶକ୍ତି ପ୍ରଭାବରେ ଜୀବର ଯେଉଁ ଦୁରବସ୍ଥା ଘଟିଛି ତାହା ବର୍ଣ୍ଣନାତୀତ । ମା' ଯେଭଳି ଆତ୍ମତ୍ୟାଗ କରି ସନ୍ତାନର

ଜୀବନ ଧାରଣ ନିମିତ୍ତ ଆଗ୍ରସର ହୋଇଛି ସ୍ନେହଭଳ ସନ୍ତାନ ସଂସାର ମୋହଗ୍ରସ୍ତ ବନ୍ଧନରେ ଛଟପଟ ହେଲେ ମଧ୍ୟ ସେ ବନ୍ଧନ ଛିନ୍ନକରି ନିଜକୁ ମୁକ୍ତକରିବା ସମ୍ଭବପର ହୋଇ ପାରୁନାହିଁ । ଯେ ତାକୁ ଗର୍ଭରେ ସ୍ଥାନଦେଲା, ଯେ ତାକୁ ସ୍ନେହ, ପ୍ରେମର ସୁଶୀତଳ କୋମଳ କୋଡ଼ରେ ବଢ଼ାଇ ଆଣିଲା ତାହାର ବନ୍ଧନ ସେ କଣ ଛିନ୍ନ କରି ପାରିବ ? ସନ୍ତାନ ହୋଇ 'ମା'ର ଆଶୀର୍ବାଦକୁ ମଥାପାତି କଣ ସେ ଗ୍ରହଣ କରିବ ନାହିଁ ? ଯେ ଦଶମାସ ଗର୍ଭରେ ଧାରଣ କରି ଭୂମିଷ୍ଠ କରାଇଛି, ରଜ ଗୁଣକୁ ସତ୍ତ୍ୱରେ ପରିଣତ କରି (ରକ୍ତବର୍ଣ୍ଣର ଶୋଣିତ ରଜୋଗୁଣ ହେତୁକ ଏବଂ ଶୁଭ୍ର ମାତୃସ୍ତନ ସତ୍ତ୍ୱ ଗୁଣର ନିଦର୍ଶନ) ତାର ସନ୍ତାନକୁ ଦାନ କରିଛି, ତାର ସ୍ନେହ ମମତା ମାୟା ହେଉ, ଜଡ଼ତା ହେଉ ଯାହା କିଛି ହେଉ ସେ କଣ ତାକୁ ଅସାର ବୋଲି କହି ତ୍ୟାଗ କରିପାରିବ ? ସେ ଯଦି ତ୍ୟାଗକରେ ତେବେ କଣ ସେ ସେହି ଅମୃତମୟୀର ସନ୍ତାନ ବୋଲି ପରିଚୟ ଦେଇ ପାରିବ ?

ଜ୍ଞାନିନାମପି ଚେତାଂସି ଦେବୀ ଭଗବତୀ ହି ସା । ବଳାଦାକୃଷ୍ୟ ମୋହାୟ ମହାମାୟା ପ୍ରଯଚ୍ଛତି ସେହି ମା' ତାର ଜ୍ଞାନୀ ସନ୍ତାନମାନଙ୍କୁ ଆକର୍ଷଣ କରି ସବଳେ ମୋହମାୟା କବଳକୁ ନିକ୍ଷେପ କରୁଛି । ସେ ଛିନ୍ନମସ୍ତାରୂପେ ଦଣ୍ଡାୟମାନ ହୋଇ ସନ୍ତାନକୁ ଶିକ୍ଷା ଦେଉଛି ତୁମେ ମୋହର ପରି ହୁଅ—ଏହି ସଂସାର ମାୟା ମୋହରେ ନିଜକୁ ଜଡ଼ାଇ ଅସାରକୁ ସାର ବୋଲି ଗ୍ରହଣ କରି ମିଥ୍ୟାକୁ ସତ୍ୟ ବୋଲି ମଥାପାତି ମାନି ନିଅ । ସଂସାର ବନ୍ଧନ ରଜ୍ଜୁରେ ଯେଉଁ ମହମାୟ ସ୍ନେହ ମମତା ନିର୍ଗତ ହେଉଛି ତାହା ତୁମେ ପାନ କର । ତୁମେ ଜନ୍ମ ହୋଇଛ ଯାହାଠାରୁ, ସେ ଭୈରବୀ ରୂପା । ତୁମ ଜନ୍ମବେଳେ ସେ ଭୟଙ୍କର ରବ ଦେଇ ବିଶ୍ୱବାସୀଙ୍କୁ ନୂତନ ବାର୍ତ୍ତା ଦେଇ କହିଛି ଏହି ସେ ଅମୃତ ସନ୍ତାନ ଭୂମିଷ୍ଠ ହେଲା କାର୍ତ୍ତିକଙ୍କ ପରି ବୀର୍ଯ୍ୟଶାଳୀ ହୋଇ, ଗଣେଶଙ୍କ ପରି ଜ୍ଞାନବାନ୍ ହୋଇ ନାରଦ ଶିବଙ୍କ ମୁଖରୁ ଏଭଳି ଏକ ନୂତନ କଥା ଶୁଣି ସବିସ୍ମୟେ ଶିବଙ୍କ ଆଡ଼େ ଚାହିଁରହିଲେ । ଶିବ ନାରଦଙ୍କ ବିସ୍ମୟଭାବର ଅର୍ଥ ବୁଝି କହିଲେ, ନା ନାରଦ ମା ତାର ସନ୍ତାନକୁ ମୋହମାୟା ଗର୍ଭରେ ନିପତିତ କରି ସନ୍ତାନକୁ ବିଭ୍ରାନ୍ତ କରେନାହିଁ ; କ୍ଷୁଦ୍ର ଶିଶୁକୁ ସ୍ତନ୍ୟଦାନ କରିବା କଣ ବିଭ୍ରାନ୍ତ ମସ୍ତିଷ୍କର ପରିଚାୟକ ? ସ୍ତର ପରେ

ସ୍ୱର ସନ୍ତାନଙ୍କୁ ଅତିକ୍ରମ କରାଇବା 'ମା'ର ହିଁ କର୍ତ୍ତବ୍ୟ । ତେଣୁ ଛିନ୍ନମସ୍ତାରୂପେ 'ମା' ତାର ସନ୍ତାନଙ୍କୁ ଛିନ୍ନ ମସ୍ତା ହେବାକୁ ଶିକ୍ଷାଦେବା ଭ୍ରମାତ୍ମକ ନୁହେଁ । ସେ ତାର ମାୟା ପ୍ରଭାବରେ ବିଶ୍ୱକୁ ବିମୋହିତ କରି ରଖିଛି । ତାହାର ପ୍ରସାଦରୁ ମଧ୍ୟ ଜୀବ ଏ ଭବ ବନ୍ଧନରୁ ମୁକ୍ତିପାଏ । ତେଣୁ ଶୁମ୍ଭାସୁର ବଧପରେ ସମସ୍ତ ଦେବତାଙ୍କ ସହିତ ମୁଁ ବ୍ରହ୍ମା ଏବଂ ବିଷ୍ଣୁ ତାକୁ ସ୍ତବକରି କହିଥିଲୁ, "ସମ୍ମୋହିତଂ ଦେବୀ ! ସମସ୍ତ ମେତତ୍, ତ୍ୱଂ ବୈ ପ୍ରସନ୍ନା ଭୁବି ମୁକ୍ତି ହେତୁଃ ॥"

ମହାଜ୍ଞାନୀ ଶିବ ଦେବୀଙ୍କ ଧ୍ୟାନ ଉଚ୍ଚ କଣ୍ଠରେ ଗାଇଉଠିଲେ । ନାରଦ ଅନୁଭବ କଲେ ତାଙ୍କ ଦେହ ବ୍ରହ୍ମାଣ୍ଡ ଭିତରେ ସେହି ମୋହ ମାୟା ରୂପିଣୀ ଛିନ୍ନମସ୍ତା ଦଶ୍ୟମାନ ହୋଇଛନ୍ତି ଧ୍ୟାନାନୁରୂପ ।

ପ୍ରତ୍ୟାଲୀଢ଼ ପଦାଂ ସଦୈବ ଦଧତୀଂ ଛିନ୍ନ ଶିରଂ କର୍ତ୍ତ୍ରିକାଂ
ଦିଗ୍‌ବସ୍ତ୍ରାଂ ସ୍ୱକବନ୍ଧଶୋଣିତ ସୁଧା ଧାରାଂ ପିବନ୍ତୀଂ ମୁଦା ।
ନାଗାବଦ୍ଧଶିରୋମଣିଂ ତ୍ରିନୟନାଂ ହୃଦ୍ୟୁତ୍ପଲାଳଙ୍କୃତାଂ
ରତ୍ୟାସକ୍ତମନୋଭବୋପରି ଦୃଢ଼ାଂ ଧ୍ୟାୟେଜ୍ଜବାସନ୍ନିଭାମ୍ ॥

ଧ୍ୟାନାନ୍ତେ ଶିବ ଜପ କରିବାକୁ ଲାଗିଲେ ମହାବିଦ୍ୟା ଛିନ୍ନମସ୍ତାଙ୍କ ମହାମନ୍ତ୍ର । ଭକ୍ତି ଚିତ୍ତରେ ଯେଉଁ ମନ୍ତ୍ର ଜପକରି ସାଧକମାନେ ଗ୍ରହ ମହାଗ୍ରହର କରାଳ କବଳରୁ ମୁକ୍ତି ଲାଭକରି ମା'ର ଅଭୟାଶୀଷ ପାଇଥାନ୍ତି ସେହି ମହାମନ୍ତ୍ର ଜପରେ ମୋହମାୟାବଦ୍ଧ ପ୍ରାଣୀ ମୁକ୍ତି ପାଇଥାନ୍ତି । ଏହି ମନ୍ତ୍ରର ତୁଳନା ନାହିଁ । ଓଁ ଐଂ ଶ୍ରୀଂ କ୍ଲୀଂ ହ୍ରୀଂ ବଜ୍ରବୈରୋଚନୀୟେ ହୂଂ ହୂଂ ଫଟ୍ ସ୍ୱାହା (ନମଃ) । ଜପ୍ତ ଶିବ ପ୍ରଣିପାତ କଲେ, ନାରଦ ଶିବଙ୍କ ପରି ମଧ୍ୟ ପୁନଃ ପୁନଃ ପ୍ରଣାମ କରିବାକୁ ଲାଗିଲେ ।

ମୁହୂର୍ତ୍ତକ ମଧ୍ୟରେ ପଟ୍ଟ ପରିବର୍ତ୍ତନ ହେଲା । ଇନ୍ଦ୍ରଜାଲ ଦେଖିଲାଭଳି ନାରଦ ଦେଖିବାକୁ ପାଇଲେ ସ୍ୱପ୍ନାରୂପୀ ସର୍ପାକୃତି ରାହୁ ମହାଗ୍ରହ ଆଖି ଆଗରେ ଦୃଶ୍ୟମାନ ହେଉଛି ଏବଂ ତାର ସମସ୍ତ ଶକ୍ତିକୁ କବଳିତ କରି ଏକ ବିବର୍ଣ୍ଣା ବୃଦ୍ଧା ନାରୀ ମୂର୍ତ୍ତି ଦୃଶ୍ୟମାନ ହେଉଛନ୍ତି । ଦେବୀ ବିବର୍ଣ୍ଣା, ଚଞ୍ଚଳା, ରୁଷ୍ଟା ଓ ଦୀର୍ଘାଙ୍ଗୀ । ପରିଧେୟ ବସ୍ତ୍ର ଅଣ୍ଡମଳିନ । କେଶ ବିବର୍ଣ୍ଣ, ରୁକ୍ଷ । ବିରଳଦନ୍ତା ବା ଦନ୍ତହୀନ ବିଧବା—ସ୍ତନ୍ୟଯୁଗ ଲମ୍ବମାନ, ଏକ କାକଧ୍ୱଜ ରଥ ଉପରେ ଦେବୀ ବିରାଜମାନ କରିଛନ୍ତି

ବିଧବା ରୂପରେ । ଦେବୀଙ୍କ ନୟନ ଯୁଗଳ ମଧ୍ୟରୁକ୍ଷ—ବାମ ହସ୍ତରେ ଶୋଭାପାଉଛି ସୂର୍ପ ଏବଂ ଦକ୍ଷିଣ ହସ୍ତରେ ବରମୁଦ୍ରା । କୁଟିଳ ରୁକ୍ଷ ନୟନ ଯୁଗ୍ମ ମଧ୍ୟ ଦେଶରେ ଏକ ଦୀର୍ଘ ନାଶିକା ଦେବୀ ଯେ ଦିନେ ସୌନ୍ଦର୍ଯ୍ୟର ଆଧାର ଥିଲେ । ତାହା ବେଶ ବୁଝାଇ ଦେଉଛି । ଉଦ୍‌ଭୁଙ୍କଶା ଏବଂ ଉଦ୍‌ଭଙ୍କଶକୃତ ଦେବୀ କ୍ଷୁଧା ପିପାସାରେ କାତର—ତେଣୁ ସେ କଳହପରା । ଏହାହିଁ ବସ୍ତୁବାଦର ଚରମ ପରିଣତି ।

ଚମତ୍କୃତ ହେଲେ ନାରଦ ଏହିଭଳି ଏକ ମହାଦେବୀଙ୍କୁ ଦର୍ଶନ କରି । ସେ ମନ୍ଦ ଜ୍ଞାନୀ ଶିବଙ୍କଆଡ଼େ ମୁଖ ଫେରାଇ ଦେଖିଲେ, ଶିବ ସେହି ଦେବୀଙ୍କୁ ଚାହିଁ ମହାଶ୍ରବଣରେ ତନ୍ମୟ ହୋଇଯାଇଛନ୍ତି । ଦେବୀଙ୍କ ବିଷୟରେ କିଛି ପଚାରିବା ନାରଦଙ୍କଦ୍ୱାରା ସମ୍ଭବପର ହେଲା ନାହିଁ । ଅପ୍ରକୃତିସ୍ଥିତ ଶିବଙ୍କୁ ସେ କଣ ବା ପଚାରିବେ ?

ଅଳ୍ପସମୟ ପରେ ଅପ୍ରକୃତିସ୍ଥିତ ଶିବ ଗାଇ ଉଠିଲେ; ଏହି ସେହି କଙ୍କାଳସାର, ଶୀର୍ଣ୍ଣ ରୁକ୍ଷ ଦେହ, ରୁକ୍ଷ କେଶ, କଙ୍କାଳସାର ବେଶରେ ବିଧବା ବେଶ ଏକ ଚରମ ପରିଣତି ବିଜ୍ଞାପିତ କରୁଛି । ଜୀବ ଏହାଠାରୁ ଅଧିକ ବିପର୍ଯ୍ୟସ୍ତ କଣ ବା ହୋଇପାରେ ? ଅଣାକାର ଆତ୍ମା ରୂପ ଓ ନାମରେ ଦେଖା ଦେବା ଦ୍ୱାରା ଏହିପରି ତାଙ୍କୁ ହେବାକୁ ହେବ । ଦୁର୍ଭିକ୍ଷ, ମହାମାରୀ, ବନ୍ୟା, ରୋଗ, ଶୋକ, ଦାରିଦ୍ର୍ୟ ପ୍ରଭୃତି ଯେଉଁ ଭୟାବହ ଶକ୍ତି ଲୋକ ଜଗତକୁ କଙ୍କାଳସାର କରୁଛି, ହାଅନ୍ନ କରୁଣ ଆର୍ତ୍ତନାଦରେ ମୋହଗ୍ରସ୍ତ ସମସ୍ତ ବିଶ୍ୱକୁ ଜାଗ୍ରତ କରୁଛି ସେ ହିଁ ଏହି ମହାଶକ୍ତି ଧୂମାବତୀ । ମୋହମାୟା ଧୂମ୍ର ଆବରଣ ତଳେ ସେ ସାରା ଜଗତକୁ ଢାଙ୍କିରଖିଛି— ପ୍ରତ୍ୟେକଙ୍କର ଜାଗ୍ରତ ଶକ୍ତିକୁ ସୁପ୍ତ କରି ରଖିଛି ।

ଅନୁଲୋମ ଗତିରେ ଶକ୍ତି ଏଠାକୁ ଆସି ଶେଷରେ ଏହିପରି ପରିଣାମ ପ୍ରାପ୍ତ ହୁଏ । ଯେଉଁ କୋଟି କୋଟି ଲୋକ ଅନ୍ନବସ୍ତ୍ର ଚିନ୍ତାରେ ସମସ୍ତ ଅତିବାହିତ କରୁଛନ୍ତି—ଏହି ଯେ କୋଟି କୋଟି ଲୋକ ବାସ୍ତୁହରା ହୋଇ ଘୂରି ବୁଲୁଛନ୍ତି, ଅଗ୍ନି ଓ ବନ୍ୟାର କରାଳ କବଳରେ ସମସ୍ତ ହରାଇ ବୃକ୍ଷତଳେ ହାହାକାର କରୁଛନ୍ତି—ରୋଗ, ଶୋକ, ମନସ୍ତାପରେ ବିଦଗ୍ଧ ହେଉଛନ୍ତି ତାହା ଏହି ମା' ଧୂମାବତୀ ଶକ୍ତି ପ୍ରଭାବରେ ହେବାକୁ ବାଧ୍ୟ ହୋଇଥାନ୍ତି । ଛିନ୍ନମସ୍ତା ରୂପରେ ନିଜେ ନିଜର ମସ୍ତକ କାଟି ବିଶ୍ୱକୁ

ବିଭ୍ରାନ୍ତ ମନୁଷ୍ୟର ପଞ୍ଚତତ୍ତ୍ୱ ଜ୍ଞାନକର୍ମ ପରେ ସେ ଧୂମାବତୀ ରୂପେ ଦେଖାଦେବା ସ୍ୱାଭାବିକ ।

ଏ ବିଶ୍ୱର ସମସ୍ତ ଶକ୍ତି ସେହି ମହାଶକ୍ତିଠାରୁ ଆସିଛି । ପୁଣି ଦିନେ ସେହି ମହାଶକ୍ତି ମଧ୍ୟରେ ଲୀନ ହୋଇଯିବ । ସୁ-ରୂପା, କୁ-ରୂପା ଭୟଙ୍କର ରୂପାଦି ଯେତେ ରୂପ ଯେତେ ବିଭବ ସବୁ ସେହି ମହାଶକ୍ତିର । ସତ୍ୟ ବ୍ରହ୍ମା ନୁହଁନ୍ତି, ସତ୍ୟ ବିଷ୍ଣୁ ନୁହଁନ୍ତି ଏବଂ ସତ୍ୟ ମୁଁ ମଧ୍ୟ ନୁହେଁ । ଆମର ଆବିର୍ଭାବ ଅଛି, ବିଲୟ ମଧ୍ୟ ଅଛି । ମାତ୍ର ଶକ୍ତିର କିଛି ନାହିଁ । ତାହାର ମଧ୍ୟରୁ ଆମେ ସବୁ ଆସିଛୁ ଏବଂ ତାହାର ମଧ୍ୟରେ ଆମେସବୁ ଲୀନ ହୋଇଯିବୁ । ସେ ମତ୍ସ୍ୟରୂପା—ସେ କଚ୍ଛପ ରୂପା । ବାରାହୀ ନାରସିଂହୀ ଆଦି ତାହାର ଶକ୍ତି । ବରାହ, ନରସିଂହାଦିଙ୍କ ଠାରେ ସେ ଥିବାହେତୁ ଜଗତ ତାଙ୍କୁ ଅବତାର ବୋଲି ଜ୍ଞାନ କରି ଆସିଛି । ସେ ସାଧାରଣଙ୍କୁ ଅସାଧାରଣ କରୁଛି ଏବଂ ଅସାଧାରଣଙ୍କୁ ସାଧାରଣ କରୁଛି ଏବଂ ଅସାଧାରଣଙ୍କୁ ସାଧାରଣ କରୁଛି ତାର ଇଚ୍ଛାକୁ ଏଡ଼ାଇବା ଶକ୍ତି କାହାର ନାହିଁ । ଆମେ ସବୁ ଲୋକଜଗତ ପରି ନିମିତ୍ତ ମାତ୍ର ।

ମା' ଏହିଭଳି ରୂପ ଧାରଣ କରି ବିଶ୍ୱକୁ ଜଣାଇ ଦେଉଛି, ହେ ଜଗତବାସି ତୁମେ ମୋର ଏହି ଭୟଙ୍କର ରୂପ ଦର୍ଶନ କରି ବୁଝିପାରୁଛ ମୁଁ କାହିଁକି ଏହିଭଳି ହୋଇଛି ? କେବଳ ତୁମରିପାଇଁ ତୁମରି ରୂପ ଧାରଣ କରି, ତୁମକୁ ଦେଖାଇ ଦେଉଛି ତୁମେ ତୁମ ଅଲକ୍ଷ୍ୟରେ ଏହିଭଳି ରୂପ ଧାରଣ କରିବାକୁ ବାଧ୍ୟ ହେଉଛ । କାରଣ ବଡ଼ ହେବାର ଆକାଙ୍କ୍ଷାକୁ ନାମ ଓ ରୂପବାନରେ ପରିଣତ କରିବା ନିମିତ୍ତ ତୁମେ ଯେଉଁ ଅଣନିଶ୍ୱାସୀ ହୋଇ ଧାଇଁ ଚାଲିଛ ତାହାର ଶେଷ ପରିଣତି ଏହିଭଳି ହୋଇଥାଏ । ତୁମେ ଏକା ଆସିଛ—ଆଉ ଗଲାବେଳେ ତୁମେ ଏକାହିଁ ଚାଲିଯିବ । ସମୟର ଏହି ବେଗଗାମୀ କାଳସ୍ରୋତରେ ତୁମେ ଗୋଟିଏ ପାଣିର ଫୋଟକା । ଅଳ୍ପସମୟ ମଧ୍ୟରେ ତୁମେ ମଧ୍ୟ ସେହି ପାଣିର ସୁଅରେ ମିଳାଇଯିବ । ପତ୍ନୀ, ପୁତ୍ର, କନ୍ୟା, ବନ୍ଧୁ ଆଦିଙ୍କ ସହ ଏ ଯେଉଁ ବିରାଟ ପଟୁଆର ଧରି ତୁମେ ଧାଇଁ ଚାଲିଛ ଏହାର ଶେଷ ପରିଣତି କଣ ତୁମେ ଦେଖିପାରୁଛ ? ତୁମମାନଙ୍କ ମଧ୍ୟରୁ କେତେକ ବିରାଟ ଅଟ୍ଟାଳିକା ଗଢ଼ୁଛ, ଆଉ କେତେକ ଗୃହହୀନ ଅବସ୍ଥାରେ କାଳାତିପାତ କରୁଛ, ଉଭୟେ ତୁମେ ଯଦି ଆକାଙ୍କ୍ଷା ଯୁକ୍ତ ହୋଇଥାଅ, ତେବେ ଉଭୟେ ତୁମେ

ସମାନ । ମଣିଷର ଆକାଙ୍କ୍ଷା ରହିଲେ ସୁଖଶାନ୍ତି ଆସିବ କେଉଁଠୁଁ ? ତେଣୁ ବିରାଟ ଅଟ୍ଟାଳିକାରେ ରହୁଥିବା ବ୍ୟକ୍ତି ମଧ୍ୟ ଶାନ୍ତିରେ ରହିପାରେ ନାହିଁ । ଯାହାର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନାହିଁ ସେ ମଧ୍ୟ ଅତୃପ୍ତ ।

ମାନବ ମଧ୍ୟରେ ସହସ୍ରଫେଣା ବିସ୍ତାର କରି ଆକାଙ୍କ୍ଷା ଫଣା ଟେକିଛି । ଫଣୀର ଫୁତ୍କାରରେ ବିଷ ଜର୍ଜରିତ ହେଉଛି ଦେହ ମନ ସବୁ । ଗୋଟିକ ପରେ ଆଉ ଗୋଟିଏ ବାସନାର ଆବିର୍ଭାବ । ଏକ ଏକ ହୋଇ ବହୁ ଏଥିରୁ ନିସ୍କୃତି ପାଇବାର ଚିନ୍ତା ମନକୁ ସ୍ପର୍ଶ କରେ ନାହିଁ । ବୀଜରୁ ଅଙ୍କୁର, ଅଙ୍କୁରରୁ ମନ, ପ୍ରାଣ ଓ ଜ୍ଞାନ ଭୂଷଣରେ ଭୂଷିତ ହେବାର ଅଦମ୍ୟ ବାସନା । ତତ୍ପରେ ପଞ୍ଚ ଜ୍ଞାନେନ୍ଦ୍ରିୟବାନ ହୋଇ 'ପଞ୍ଚତନ୍ମାତ୍ରା' ସଂସ୍ପର୍ଶରେ ଆସିବାର ପ୍ରବଳ କାମନା ଜନ୍ମେ । ତା'ପରେ ରୂପମୟ, ନାମ ଏବଂ ଆକାରମୟ ହୋଇ ଜଗତ୍ ତଥା ବସ୍ତୁଭୋଗର ପଙ୍କିଳ ଇଚ୍ଛା ମାନବକୁ ଯେଉଁ ବିଭିନ୍ନ ଦିଗକୁ ଟାଣିନିଏ ତାହାହିଁ ମା' ଧୂମାବତୀର ସ୍ଥୂଳରୂପ । ଏହିରୂପ ଦେଖି ଦେଖି ମୁଁ ଉଦ୍‌ବୁଦ୍ଧ ହୋଇଯାଇଛି । ତେଣୁ ବାଛି ନେଇଛି ଏକାନ୍ତବାସ—ତାହାର ଚିନ୍ତା । ତଥାପି ନିସ୍ତାର ନାହିଁ । ଥରକୁ ଥର ସେ ମୋହ ଅଜ୍ଞାନ କୂପରେ ନିକ୍ଷେପ କରି ପ୍ରମାଣିତ କରନ୍ତି ସେ ମୂଳ । ତା' ଇଚ୍ଛାରେ ମୁଁ ପରିଚାଳିତ । ପ୍ରତି ଯୁଗରେ ପ୍ରତି ଜୀବରେ ତାର ଏହି ବିଭିନ୍ନ ଲୀଳା ଚାଲିଆସିଛି । 'ଏକୋଽହଂ ବହୁ ସ୍ୟାମ୍' । ଆକାଙ୍କ୍ଷାର ଏହାହିଁ ଚରମ ପରିଣତି । କେବଳ ନିସ୍ତାର ପାଇବାହିଁ କାମ୍ୟ । ନିସ୍ତାର ମଧ୍ୟ ପାଇବ ନାହିଁ । ମୋହ ଆବର୍ତ୍ତନରେ ଜୀବ ଜଗତ୍ ଏହିଭଳି ନିକ୍ଷେପିତ ହୁଏ । ଦିଗ୍‌ଭ୍ରାନ୍ତ ପଥହରା ପଥିକର କିପରି ମଙ୍ଗଳ ହେବ, କିପରି ଏ ସର୍ବନାଶୀ ଆକାଙ୍କ୍ଷାରୁ ମୁକ୍ତି ପାଇବ ତାହା ସେ ଜାଣିବ କୁଆଡୁ ? 'ଜ୍ଞାନିନାମପି ଚେତାଂସି ଦେବୀ ଭଗବତୀ ହିସା । ବଳାଦାକୃଷ୍ୟ ମୋହାୟ ମହାମାୟା ପ୍ରୟଚ୍ଛତି ।' ସେହି ଦେବୀ ଭଗବତୀ ଜ୍ଞାନୀମାନଙ୍କ ମନକୁ ମଧ୍ୟ ସବଳେ ଆକର୍ଷଣ କରି ମାୟାମୋହ ଅନ୍ଧକାର କୂପରେ ନିକ୍ଷେପ କରନ୍ତି ।' ତମୋଗୁଣର ଆଶ୍ରୟ ନେଲେ ଏହିପରି ହେବାକୁ ହୁଏ । ଏହିପରି ଭୟଙ୍କର ରୂପ ଦର୍ଶନ କରି ମୂଢ଼ ମାନବମନରେ କଣ ଟିକିଏ ଚେତନା ଆସେ ଏହି ଭୟଙ୍କର ରୂପରୁ ନିଜକୁ ରକ୍ଷା କରିବାକୁ ମହାମାୟାଙ୍କ ଶରଣାପନ୍ନ ହେବା ପାଇଁ ?

ଏହି ମୂର୍ତ୍ତିର ଆଦ୍ୟରେ ସେହି ମହାଶକ୍ତିଙ୍କ ଅଂଶ ମହାବିଷ୍ଣୁ ଜଳ ମଧ୍ୟରେ ଶୟିତ । ତାଙ୍କ ଅଲକ୍ଷରେ ନାଭିକମଳରୁ ବ୍ରହ୍ମ ଉତ୍ପନ୍ନ ହେଲେ । ଶିଶୁ ବ୍ରହ୍ମାଙ୍କୁ ଦେଖି ବିଷ୍ଣୁଙ୍କ କର୍ଣ୍ଣମଳରୁ ସମ୍ଭୂତ ମଧୁ ଏବଂ କୈଟଭ ନାମକ ରାକ୍ଷାସ ତାଙ୍କୁ ବଧ କରିବାକୁ ଆଗେଇ ଆସିଲେ । ତାଙ୍କ ହସ୍ତରୁ ରକ୍ଷାପାଇବା ପାଇଁ ବ୍ରହ୍ମା ଚେଷ୍ଟାକଲେ ମହାବିଷ୍ଣୁଙ୍କୁ ଜାଗ୍ରତ କରିବାକୁ । ମାତ୍ର ତାଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ମହାବିଷ୍ଣୁଙ୍କ ନିଦ୍ରାଭଙ୍ଗ ନ ହେବାରୁ ବ୍ରହ୍ମା ଚକିତ ହୋଇ ଲକ୍ଷ୍ୟକଲେ ଏକ ମହାଶକ୍ତି ତାଙ୍କୁ ମୋହଗ୍ରସ୍ତ କରି ରଖିଛି । ସେହି ଶକ୍ତି କବଳରୁ ତାଙ୍କୁ ମୁକ୍ତ କରିବାକୁ ହେଲେ ଆବଶ୍ୟକ ସେହି ଶକ୍ତିଙ୍କର ପ୍ରବୋଧନ । ସେ ମୁକ୍ତ କଣ୍ଠରେ ଗାଇଉଠିଲେ, ତ୍ୱଂ ସ୍ୱାହା ତ୍ୱଂସ୍ୱଧା ତ୍ୱଂହି ବଷଟ୍‌କାରସ୍ୱରତ୍ମିକା । ସନ୍ତୁଷ୍ଟ ହେଲେ ସେହି ଅଦ୍ୟ ଦେବୀ, ମୋହ ପାଶରେ ଆବଦ୍ଧ କରି ରଖିଥିବା ଜନାର୍ଦ୍ଦନଙ୍କୁ ସେ ମୁକ୍ତ କଲେ । ଭଗବାନ ନିଦ୍ରା ତ୍ୟାଗ କରି ରାକ୍ଷାସ ଦ୍ୱୟଙ୍କୁ ଦେଖି ତାଙ୍କ ସହିତ ପାଞ୍ଚ ସହସ୍ର ବର୍ଷ ପର୍ଯ୍ୟନ୍ତ ସଂଗ୍ରାମରେ ଲିପ୍ତ ହେଲେ । କିନ୍ତୁ ବଧ କରି ପାରିଲେ ନାହିଁ ରାକ୍ଷସ ଦ୍ୱୟଙ୍କୁ । ସେହି ଦେବୀଙ୍କ ଅନୁଗ୍ରହରୁ ରାକ୍ଷସଦ୍ୱୟ ମୋହବଶ ହୋଇ ବିଷ୍ଣୁଙ୍କୁ ବର ଯାଚିଲେ । ବିଷ୍ଣୁ ପ୍ରାର୍ଥନା କଲେ ତାଙ୍କୁ ବଧ । ବୁଝିପାରିଲେ ରାକ୍ଷସ ତାଙ୍କ ଭୁଲ । ଅନ୍ୟଥା କରିବାକୁ ଉପାୟ ନାହିଁ, କଥା ବଞ୍ଚାଇ କହିଲେ ଯେଉଁଠାରେ ଜଳନାହିଁ ସେହିଠାରେ ବଧ କରନ୍ତୁ । ଚତୁର୍ଦ୍ଦିଗ ଜଳାର୍ଣ୍ଣବ । ଚିନ୍ତାକଲେ ଭଗବାନ ବିଷ୍ଣୁ । ଯେତେ ଚିନ୍ତାକଲେ ମଧ କିଛି ଠିକ୍ କରି ପାରିଲେ ନାହିଁ । ଧ୍ୟାନ କଲେ ସେହି ମହାଶକ୍ତିଙ୍କୁ । ସଙ୍ଗେ ସଙ୍ଗେ ଉପାୟ ଦୃଶ୍ୟ ହେଲା । ବିସ୍ତାରିକଲେ ନାରାୟଣ ନିଜର କାୟା । ରାକ୍ଷସ ଦ୍ୱୟ ମଧ ବୁଝିପାରିଲେ ନାରାୟଣଙ୍କ ଉଦ୍ଦେଶ୍ୟ । ଆସୁରିକ ଶକ୍ତିରେ ସେ ଦୁହେଁ ମଧ ନିଜ ନିଜର ଶରୀର ବର୍ଦ୍ଧିତ କରିବାକୁ ଲାଗିଲେ । ଭଗବାନ ବା କେତେ ନିଜକାୟା ବଢ଼ାଇବେ ? ପୁନର୍ବାର ଧ୍ୟାନ କଲେ ସେହି ଆଦ୍ୟ ଶକ୍ତିଙ୍କୁ ।

କୋଟି କୋଟି ବ୍ରହ୍ମାଣ୍ଡର ସେ ଈଶ୍ୱରୀ । ଯାହା ସେ କରୁଛନ୍ତି ତାହା ସେ କରାଉଛନ୍ତି । ସମସ୍ତଙ୍କ ମଧ୍ୟରେ ଶକ୍ତିରୂପରେ ସେ ଅବସ୍ଥାନ କରିଛନ୍ତି । ଦୃଷ୍ଟିଶକ୍ତି, ଇଚ୍ଛାଶକ୍ତି, ବାକଶକ୍ତି ଆଦି ପ୍ରତ୍ୟେକ, ତାହାର ଇଚ୍ଛାରେ କ୍ରିୟା । ତେଣୁ ମଧୁ କୈଟଭ ବରରୂପ ଇଚ୍ଛାକୁ କେବଳ ସେହିମାନେ ପ୍ରତିହତ କରି ପାରିବ । ନାରାୟଣଙ୍କ ଧ୍ୟାନରେ ଦେବୀ ସନ୍ତୁଷ୍ଟ ହୋଇ ମଧୁ କୈଟଭଙ୍କ

ମନକୁ ମୋହିତ କଲେ । ସେ ଦୁହେଁ ଭାବିଲେ ଆମେ ବଡ଼ ଭୁଲ କରୁଛୁ । ନାରାୟଣଙ୍କୁ ଯେତେବେଳେ କଥା ଦେଇଛୁ ତାଙ୍କ ହସ୍ତରେ ବଧ ହେବା ନିମିତ୍ତ ସେତେବେଳେ ଏ ପ୍ରବଞ୍ଚନା କାହିଁକି ?

ପ୍ରବଞ୍ଚନାରୁ କ୍ଷାନ୍ତ ହେଲେ ରାକ୍ଷସଦ୍ୱୟ । ଅନିବାର୍ଯ୍ୟ ହେଲା ନାରାୟଣଙ୍କ ହସ୍ତରେ ତାଙ୍କ ବଧ ।

ଏହିଠାରେ ହିଁ ଜୀବ ଭୁଲ କରିଥାଏ । ଯେଉଁ ବାଟରେ ଯିବାଦ୍ୱାରା ସେ ଜୟଲାଭ କରୁଛି ସେ ବାଟ ତ୍ୟାଗ କରି ଅନ୍ୟବାଟ ଧରିବା ଦ୍ୱାରା ତାର ପରାଜୟ ହେବ ସ୍ୱାଭାବିକ୍ ଯେ ଯେଉଁ ପଥରେ ଯାଉନା କାହିଁକି ସେ ପଥର ଶେଷରେ ସେ ପୂର୍ଣ୍ଣଲାଭ କରେ । ବିଭିନ୍ନ ପଥରେ ଯାଇ ଯାଇ ଜ୍ଞାନଅର୍ଜନ କରି ଜୀବ ଶିବ ପଦବାଚ୍ୟ ହୁଏ । ପଥତ୍ୟାଗ କଲେ ତାର ହୁଏ ମୃତ୍ୟୁ । ମୁଁ ବିଭିନ୍ନ ଜ୍ଞାନର ଅଧିକାରୀ ହୋଇଛି । ଗୋଟିଏ ବିଷୟର ଜ୍ଞାନରୁ ଆଉ ଏକ ବିଷୟ ଜ୍ଞାନକୁ ଯିବାଦ୍ୱାରା୍ ସେହି ମୁହୂର୍ତ୍ତରେ ସେହି ପୁରାତନ ଜ୍ଞାନଟି ନିଷ୍କ୍ରିୟ ହୋଇ ପଡ଼ିଥାଏ । ବର୍ତ୍ତମାନ ତୁମେ ମହାବିଦ୍ୟା ଧୂମାବତୀଙ୍କୁ ଦର୍ଶନ କରି ତାଙ୍କ ଭାବରେ ଉଦ୍‌ବୁଦ୍ଧ ହୋଇ ଏଇ ପରମୁହୂର୍ତ୍ତରେ ଦେଖିଥିବା ତଥା ତାଙ୍କ ଭାବଧାରାରେ ନିଜର ସତ୍ତା ବୁଡ଼ାଇ ଦେଇଥିବା ମହାବିଦ୍ୟା ଛିନ୍ନମସ୍ତା ବର୍ତ୍ତମାନ ତୁମ ଭିତରେ ନିଷ୍କ୍ରିୟ ଅବସ୍ଥାରେ ପଡ଼ିରହିଛନ୍ତି । କିନ୍ତୁ ଏକରୁ ଅନ୍ୟକୁ ଯିବାଦ୍ୱାରା ତୁମ ଜ୍ଞାନର ଯେପରି ପରିବୃଦ୍ଧି ହୁଏ ସେହିପରି ତୁମର ନୂତନ ସଂସ୍କାର ମଧ୍ୟ ହୋଇଥାଏ । ଜୀବ ବିଶ୍ୱବକ୍ଷରେ ଜନ୍ମଗ୍ରହଣ କରିବାର ଆବଶ୍ୟକତା କଣ ଏହା ଏକ ବିରାଟ ପ୍ରଶ୍ନ । କେତକ ଏହାର ଉତ୍ତରରେ କହିପାରନ୍ତି ଏହା ଇଚ୍ଛାମୟର ଇଚ୍ଛା । କେତେକ ମଧ୍ୟ କହିବେ ଏହା ଈଶ୍ୱରଙ୍କ ଖେଳ । ମାତ୍ର ପ୍ରକୃତରେ ଜୀବ ଆସେ ବିଷ୍ଣୁଙ୍କ ପରି, ବ୍ରହ୍ମାଙ୍କ ପରି ଏପରିକି ମୋପରି ହେବାକୁ । ଆଜିର ନୂତନ କାଲି ପୁରାତନ । ପୁରାତନ ସମାଧି ଉପରେ ନୂତନର ସ୍ଥିତି ନ ହେଲେ ବିଶ୍ୱନିଷ୍କ୍ରିୟ ହୋଇ ପଡ଼ିବ । ଧୀରେ ଧୀରେ ଧ୍ୱଂସ ପାଇଯିବ ସବୁ । ସ୍ୱପ୍ରକାଶୀ ବା ଉତ୍କଳର ଏକାମ୍ର ପୀଠରେ ଜନନୀ ଧୂମାବତୀ ରାମୁଣ୍ଡା ରୂପରେ ପୂଜା ପାଇବେ । ତାଙ୍କ ସ୍ୱରୂପରେ ସ୍ପଷ୍ଟ ଜହ୍ୱବ ସେ ଶବ ଉପରେ ଉପବେଶନ କରିଛନ୍ତି ।

ଖବ ହିଁ ପୁରାତନ । ଦେବୀ ସେହି ପୁରାତନ ଜଗତରେ ନୂତନ ଦିଗ୍‌ଦର୍ଶନ ପାଇଁ ଉପସ୍ଥିତ । ଦେବୀଙ୍କର ନିଜ ଇଚ୍ଛାରେ ଶରୀର ଦର୍ଶନ କଲେ ଲୋକ ମନରେ ଭୟସଞ୍ଚାର ହେବ । ଯେତେବେଳେ ସୃଷ୍ଟି ମୋତେ ଧୂମାବତୀ ରୂପେ ଦେଖା ଦେଲେ ସେତେବେଳେ ଚମତ୍କୃତ ହେଲି ସେହି ରୂପ ଦର୍ଶନ କରି । କୋଟି ଜଗତର ଜନନୀର ଏକ ଭୟଙ୍କର ରୂପ । ମୁଁ ଚିନ୍ତା କରୁ କରୁ ଦେବୀ ଉଚ୍ଚସ୍ୱରରେ କହିଲେ, ମୁଁ କ୍ଷୁଧାରେ ଆତୁର । ମୋର ଉଦର ପରିତୃପ୍ତ କର ।

ଜନନୀର କ୍ଷୁଧା । ସେ କ୍ଷୁଧା ପାଇଁ ମୋ ପାଖରେ ବା କି ପାଥେୟ ଅଛି ? ମୋର ଚିନ୍ତା ସେ ଜାଣିପାରି କହିଲେ ଯେ ପାଥେୟ ତୁ ନିଜେ । ତୁ କେବଳ ହୃଷ୍ଟପୁଷ୍ଟ ବଳିଷ୍ଠ ହୋଇଛୁ, ତୋତେ ହିଁ ଭକ୍ଷଣ କରି ମୁଁ ମୋ କ୍ଷୁଧା ମେଣ୍ଟାଇବି । ବେଶୀ ସମୟ ନୁହେଁ—ମାତ୍ର ମୁହୂର୍ତ୍ତକ ମଧ୍ୟରେ ମୁଁ ଆକର୍ଷିତ ହୋଇ ତାହାର ପାଖକୁ ଚାଲିଗଲି । ସେ ମଧ୍ୟ ସଙ୍ଗେ ସଙ୍ଗେ ମୁଖପ୍ରସାରି ମୋତେ ଗର୍ଭକୁ କ୍ଷେପଣ କଲା । କିନ୍ତୁ ପରମୁହୂର୍ତ୍ତରେ ଗୋଟାଏ ବିରାଟ ଧୂମ ଆବରଣ ତଳେ ସେ ଲୁଚିଗଲା । ତାର ସମସ୍ତ ଶରୀରରୁ ନିର୍ଗତ ହେବାକୁ ଲାଗିଲା ବିପୁଳ ଧୂମରାଶି । ସେହି ଧୂମରାଶି ଆଚ୍ଛନ୍ନ କଲା ସାରା ବିଶ୍ୱକୁ । ତାପରେ ଶୁଣାଗଲା ତାହାର ଅଟ୍ଟ ଅଟ୍ଟ ହସ । ଓଃ—କି ଭୟଙ୍କର ବିକଟାଳ ହସ ସେ । ସେ ହସି କହିଲା—ଏଥର ତୁମେ ଆତ୍ମପ୍ରକାଶ କର । ମୁଁ ତୁମ ଉପରେ ସନ୍ତୁଷ୍ଟ । ଚିରଦିନ ମୁଁ ହେବି ତୁମର ପ୍ରାଣସଙ୍ଗିନୀ । ମୁଁ ତୋତେ ଗର୍ଭକୁ କ୍ଷେପଣ କରିଥିଲି ଏଥିପାଇଁ ମୁଁ ହେବି ବିଧବା । କେବଳ ଜଗତକୁ ଦେଖାଇବା ପାଇଁ ମୁଁ ବଶବର୍ତ୍ତିନୀ କେବଳ ତାହାର ଯେ ମୋ ଇଚ୍ଛା ନିବାରଣ ପାଇଁ ନିଜକୁ ହିଁ ଦାନ କରିଥାଏ ।

ମୁଁ ପୁଣି ଆବିର୍ଭାବ ହେଲି ସେହି ଧୂମକୁଣ୍ଡଳୀ ମଧ୍ୟରୁ । ସେ ପ୍ରାଣ, ସେ ଆତ୍ମା, ସେ ସବୁକିଛି । ଠିକ୍ ଏ ଦେହ ମଧ୍ୟରେ ଆତ୍ମା ଭଳି ଧୂମକୁଣ୍ଡଳୀ ମଧ୍ୟରେ ସେ ଆତ୍ମା ରୂପେ ଅବସ୍ଥାନ କରିଥିଲା ।

ଏ ଏକ ମହାବୃକ୍ଷ । ଏ ବୃକ୍ଷରେ ଦୁଇଟି ପକ୍ଷୀ ବସିଛନ୍ତି । ଉଚ୍ଚ ଶାଖାରେ ଯେ ବସିଛି ସେ ସଦା ଅଭୁକ୍ତ । ନିମ୍ନଶାଖାରେ ଯେ ବସିଛି ସେ ମିଷ୍ଟ ଫଳ ଭକ୍ଷଣ କରିଥାଏ । ଉପର ପକ୍ଷୀଟି ବରାବର ତାକୁ ଇଙ୍ଗିତ

ଦେଇ ଆହ୍ୱାନ କରେ ପଳାଇ ଆସିବାକୁ । ମାତ୍ର ମିଷ୍ଟ ଫଳ ତ୍ୟାଗକରି ସେ ଆସୁଛି କେଉଁଠୁ ? ଯେତେବେଳେ ସେ ତିକ୍ତଫଳ ଖାଏ ସେତେବେଳେ ତିକ୍ତ ହୋଇଯାଏ ତାର ମନ । ପଳାଇଯାଏ ଉଚ୍ଚ ଶାଖାରେ ବସିଥିବା ପକ୍ଷୀ ପାଖକୁ । ସେ ଯେତେବେଳେ ସେ ପକ୍ଷୀ ପାଖରେ ପହଞ୍ଚେ ସେତେବେଳେ ସେ ବସ୍ତୁତଃ ନ ହୋଇ ଉଦ୍ବେଗରେ ନାହିଁ । କାରଣ ଉଚ୍ଚ ଶାଖାରେ ଯେଉଁ ପକ୍ଷୀଟି ବସିଛି ସେହିଁ ମୂକପକ୍ଷୀ । ନିମ୍ନଶାଖା ପକ୍ଷୀଟି ତାର ଘୃଷ୍ଟାମାତ୍ର । ଏହି ଘ୍ରଷ୍ଟାହିଁ ଜୀବ, ଉଚ୍ଚ ଶାଖାରେ ପ୍ରକୃତ ସେ ବସି ତା' ଘୃଷ୍ଟାର କାର୍ଯ୍ୟକୁ ଲକ୍ଷ କରୁଛି । ଠିକ୍ ସ୍ୱପ୍ନାବସ୍ଥା ମାନବପରି । ବିଭିନ୍ନ ଆବର୍ତ୍ତନରେ ଜୀବକୁ ଘୂରିବାକୁ ପଡ଼ିବ । କାହାରି ଏଥିରୁ ନିସ୍ତାର ମିଳେ ନାହିଁ । ଯାହାକୁ ମିଳିଥାଏ ସେ ସମସ୍ତ ସ୍ତର ଅତିକ୍ରମ କରି ଆସିଛି । ହେଇ ତୁମେ ଶକ୍ତିର ଜୀବର ବିବର୍ତ୍ତନବାଦ ଲକ୍ଷ୍ୟକରି ଆଶ୍ଚର୍ଯ୍ୟ ହୋଇ-ଯାଉଛ । ଏକପରେ ଆଉ ଏକ ନ ଥିଲେ ସେହି ପୁରାତନକୁ ତୁମେ କେତେକାଳ ଧରି ରହିବ ?

ନୀରବ ଶୂନ୍ୟ ମାର୍ଗରେ ଧୂମାବତୀର ସେ ଭୟଙ୍କର ରୂପକୁ ଥରକୁ ଥର ନିରୀକ୍ଷଣ କରିବାକୁ ଲାଗିଲେ । ପ୍ରଥମେ ଧୂମାବତୀ ତାଙ୍କୁ ଯେଉଁଭଳି ଭୟଙ୍କରୀ ବୋଲି ଜ୍ଞାନ ହେଉଥିଲେ, ସେ ସେଭଳି ଆଉ ଦୃଶ୍ୟ ହେଲେ ନାହିଁ । ଧୂମାବତୀ ରୂପରେ ଦାର୍ଶନିକ ଭାବରେ ନାରଦ ଭାବବହ୍ୱଳ ହୋଇ ତାଙ୍କ ଭୟଙ୍କରୀତାକୁ ଭୁଲିଗଲେ । ଶିବ କହିଲେ, ଧୂମାବତୀଙ୍କୁ ପୂଜା କରିବା ପାଇଁ ଖୁବ୍ ଅଳ୍ପସାଧକ ଆଗଭର ହୋଇଥାନ୍ତି । ଧୂମାବତୀ ସନ୍ତୁଷ୍ଟା ହେଲେ ଅଭାବ ଅସୁବିଧା ଦୂରୀଭୂତ ହୁଏ । ସବୁଦୁଃଖ ଅପସରିଯାଏ । 'ଦ' କାରର ପରବର୍ତ୍ତୀ ବର୍ଣ୍ଣ 'ଧ' କାରରେ 'ଉ' ଏବଂ ବିନ୍ଦୁ ଯୋଗ କଲେ ଯେଉଁ ବୀଜ ହୁଏ, ତାହା ଅଗ୍ରେ ଉଚ୍ଚାରଣ ପୂର୍ବକ 'ଧୂମାବତୀ ସ୍ୱାହା' କହିବାକୁ ହୁଏ । ତେଣୁ ସମ୍ପୂର୍ଣ୍ଣ ମନ୍ତ୍ର ହେଉଛି ଧୂଁ ଧୂଁ ଧୂମାବତୀ ସ୍ୱାହା । ଏହି ମନ୍ତ୍ର ଅଷ୍ଟାକ୍ଷରୀ ବିଦ୍ୟା ନାମେ ପ୍ରସିଦ୍ଧ । ପ୍ରାତଃକୃତ୍ୟାଦି ସମାପନାନ୍ତେ ଭୂତଶୁଦ୍ଧି ଓ ପ୍ରାଣାୟାମ କରି ମାତୃମାନୁସାରେ ଋଷ୍ୟାଦି ନ୍ୟାସପରେ ଦେବୀଙ୍କ ଧ୍ୟାନ କରିବାକୁ ହେବ । ତାହା ହେଉଛି—

ବିବର୍ଣ୍ଣା ଚଞ୍ଚଳାଦୁଷ୍ଟା (କାଦୁଷ୍ଟା) ଦୀର୍ଘାଚ ମଳିନାମ୍ବରା । ବିବର୍ଣ୍ଣ କୁନ୍ତଳାରୁକ୍ଷା ବିଧବା ବିରଳଦ୍ୱିଜା କାକଧ୍ୱଜ ରଥାରୂଢ଼ା ବିଲମ୍ବିତ

ପତ୍ସ୍ୱାଧଗ—-ସ୍ୱର୍ଣ୍ଣହସ୍ତା ଚତୁରାକ୍ଷୀ ଧୂତହସ୍ତ ବରାନ୍ୱିତା ପ୍ରବୃଦ୍ଧା-ଘୋଣାଭୁ ଭୃଶଂ କୁଟିଳା କୁଟିଳେକ୍ଷଣା । କ୍ଷୁତ୍ପିପାସାଦ୍ଦିତାନତ୍ୟଂ ଉସ୍ସଦା ଜନପ୍ରୀପ୍ସ୍ୱା ତସ୍ୱନନ୍ଦିନୀ ବରନନ୍ଦନା ।

ପୂରଶ୍ଚରଣସିଦ୍ଧ୍ୟର୍ଥ କୃଷ୍ଣପକ୍ଷୀୟ ଚତୁର୍ଦ୍ଦଶୀତିଥିରେ ଉପବାସ କରି ଶୂନ୍ୟାଳୟେ, ଶ୍ମଶାନେ ଅଥବା ବନମଧ୍ୟରେ ଦିବାରାତ୍ର ମୌନରହି ଏକଲକ୍ଷ ଜପ କରିବାକୁ ହେବ । ପୁରଶ୍ଚରଣ କାର୍ଯ୍ୟରେ ଉଷ୍ଣୀଷ ଧାରଣ ଓ ଆର୍ଦ୍ର ବସ୍ତ୍ର ପରିଧାନ କରିବା ଉଚିତ । ଶତ୍ରୁ ଧ୍ୱଂସ ପାଇଁ ଶତ୍ରୁର ନାମ ଉପରେ ମୂଳମନ୍ତ୍ର ଲେଖି ତାପରେ ଶିବଲିଙ୍ଗ ସ୍ଥାପନ ପୂର୍ବକ ଅର୍ଚ୍ଚନା କରି ମନ୍ତ୍ର ଜପ କରିବାକୁ ହୁଏ । ଏହିଭଳି ପଞ୍ଚଶତ ଥର ଧୂମାବତୀ ମନ୍ତ୍ର ଜପକଲେ ଶତ୍ରୁକୁ ଜ୍ୱର ପୀଡ଼ା ହୁଏ । ପଞ୍ଚଗବ୍ୟ ବା ଦୁଗ୍ଧ ଦ୍ୱାରା ହୋମ କଲେ ଏହି ଜ୍ୱର ଆରୋଗ୍ୟ ହୁଏ । ଏ ବିଷୟରେ ବିସ୍ତୃତ ଭାବେ ମୁଁ ତନ୍ତ୍ର ଶାସ୍ତ୍ରମାନଙ୍କରେ କହିଛି ।

ଶିବଙ୍କ କଥାଶୁଣି ନାରଦ ଆକାଶ ମାର୍ଗକୁ ଅନାଇ ଧୂମାବତୀଙ୍କୁ ଲକ୍ଷ୍ୟକଲ ବେଳକୁ ଆଉ ଧୂମାବତୀ ଦୃଶ୍ୟ ହେଲେ ନାହିଁ । ତାଙ୍କ ବଦଳରେ ସେ ଦୃଶ୍ୟମାନ ହେଲେ ଯୋଧୃପୁରୁଷ ମଙ୍ଗଳ ଗ୍ରହର ସମସ୍ତ ଶକ୍ତିକୁ ପରାହତ କରି ଏକ ଦେବୀଙ୍କୁ ଦେବୀ ସୁଧା ସମୁଦ୍ର ମଧ୍ୟସ୍ଥ ମଣିମୟ ମଣ୍ଡପ ଉପରେ ରତ୍ନନିର୍ମିତ ବେଦିକାସ୍ଥ ସିଂହାସନରେ ଉପବିଷ୍ଟ । ଦେବୀଙ୍କର ବର୍ଣ୍ଣ ଯେପରି ପୀତ ସେହିଭଳି ପୀତ ବର୍ଣ୍ଣର ବସ୍ତ୍ର ପରିଧାନ କରିଛନ୍ତି । ତାଙ୍କ ସର୍ବାଙ୍ଗରେ ମାଲ୍ୟ ବିଭୂଷିତ ସେ ଦ୍ୱିଭୁଜା ଏବଂ ବାମ କରରେ ଶତ୍ରୁରଜିହ୍ୱା ଧାରଣ କରି ଦକ୍ଷିଣ ହସ୍ତସ୍ଥିତ ଗଦାଦ୍ୱାରା ଶତ୍ରୁକୁ ପ୍ରହାରରେ ବ୍ୟସ୍ତ ।

୦

ନାରଦ ବାର ବାର କରି ସେହି ଶତ୍ରୁପୀଡ଼ାଦାୟିନୀ ରୂପକୁ ଦର୍ଶନ କରିବାକୁ ଲାଗିଲେ । ଯେଉଁ ଧୂମ୍ର ଆବରଣ ତଳେ ଗାଢ଼ ମୋହାନ୍ଧ ସେ ରୂପ ଅପସରି ଯାଇଛି । ଉଦ୍ଭାସିତ ହୋଇଛି ତାଙ୍କ ଚକ୍ଷୁ ସମ୍ମୁଖରେ ସ୍ୱର୍ଣ୍ଣାଭକାନ୍ତି । ସେହି ବିବର୍ଣ୍ଣା କ୍ଷୀଣଦେହା ବଦଳରେ ସେ ଦେଖୁଛନ୍ତି ହୃଷ୍ଟପୁଷ୍ଟା କନକବର୍ଣ୍ଣା ବପୁଳ ଶକ୍ତିଧାରିଣୀଙ୍କୁ । ଦାରିଦ୍ର୍ୟର ଚରମ କଷାଘାତ ଯେଉଁ ମହାଦେବୀ ସହ୍ୟକରି ନ ପାରି ମୁଖର - କଳହରତା ଥିଲେ ସେ ମହାଦେବୀଙ୍କ ବଦଳରେ ଉପବିଷ୍ଟା ଐଶ୍ୱର୍ଯ୍ୟଶାଳିନୀ ଶତ୍ରୁ

ଭଘାତିମାଙ୍କୁ । ବିସ୍ମିତ ହେଲେ ନାରଦ ମୁହୂର୍ତ୍ତିକ ପାଇଁ । ଏକ ଅଭିନବ ସୃଷ୍ଟି ମହାଦେବ ଶିବଙ୍କର । ଇନ୍ଦ୍ରଜାଲ ଭଳି ଏହିଣ ଦର୍ଶନ କରୁଥାନ୍ତି ଏକ ପରେ ଏକ ।

ନାରଦଙ୍କ ଭଳି ଶିବ ସେହି ସୌମ୍ୟମୂର୍ତ୍ତି ଦର୍ଶନ କରି ତନ୍ମୟ ହୋଇପଡ଼ନ୍ତେ । ସେ ଉଚ୍ଚ କଣ୍ଠରେ କହିଉଠିଲେ ଦେଖନ୍ତୁ ନାରଦ ମୋହମାୟା ବିଚୂର୍ଣ୍ଣିତା ବଗଳାଙ୍କୁ । ବହୁଜନ୍ମ ଧରି ଜୀବ ଯେତେବେଳେ ଧୂମାବତୀ କବଳରେ ପତିତ ହୋଇ ଦାରିଦ୍ର୍ୟ ଦୁଃଖ ତାପରେ ନର୍ଯ୍ୟାତିତ ହୁଏ ସେତେବେଳେ ସେ ଆର୍ତ୍ତନାଦ କରିଉଠେ— ଉଚ୍ଚ କଣ୍ଠରେ ଡାକିଦିଏ କିଏ ଅଛି ନଗତ୍ରପୁତ ଆତ୍ମସ୍ଥ ହେବ—ତାଙ୍କୁ ଉଦ୍ଧାର କରିବ, ତାଙ୍କୁ କୁମ୍ଭୀପାକରୁ ପରିତ୍ରାଣ କରିବ । ଦେହ ବିବର୍ଣ୍ଣ, ମନ ଚଞ୍ଚଳ, ପ୍ରକୃତିରୁଢ଼, ଅନ୍ତର ମଳିନ । ଅନାହାରେ, ଅନିଦ୍ରାରେ, ରୋଗେ, ଶୋକେ, ଦୈନେ—ଜର୍ଜ୍ଜରିତ ସେ । ଯେ ଆକାଙ୍କ୍ଷିତ ହୋଇ ଛୁଟିଆସିଥିଲା ବହୁବାଧ ଆନନ୍ଦରେ କାଳାଗ୍ନିପାତ କରିବ, ସୁଖାନ୍ତି ଶଯ୍ୟାରେ ବିଭୋର ହେବ, ସେ ଯେତେବେଳେ ଧୂମାବତୀ କବଳରେ ପତିତ ହେଲା, ସେତେବେଳେ ସେ ଆର୍ତ୍ତନାଦ କରିଉଠିଲା । ସେ ଉଚ୍ଚ କଣ୍ଠରେ ଡାକଦେଲା ମୋତେ ଉଦ୍ଧାର କର—ମୋତେ ପରିତ୍ରାଣ କର ।

ଦିନ ଅନ୍ଧକାର । ଚକ୍ଷୁ ଉପରେ ନିପତିତ ଆଖିପତା ଠାରୁ ସେ ଆହୁରି ଅଧିକ । କିନ୍ତୁ ସେ ଅନ୍ଧାର ବରଂ ଜୀବ ପକ୍ଷେ ଶ୍ରେୟସ୍କର, ମାତ୍ର ଧୂମାବତୀ କବଳରେ ପଡ଼ି ତାହାରି ଭଳି ହେବା ବଡ଼ କଷ୍ଟକର । ମୋହଗ୍ରସ୍ତ ଛିନ୍ନମସ୍ତା ରୂପଠାରୁ ଆହୁରି ଭୟଙ୍କର । ଛିନ୍ନ ମସ୍ତାଙ୍କ କବଳରେ ସେ ଧୀରେ-ଧୀରେ ମାୟାର ବିସ୍ତୃତ ରାଜ୍ୟ ମଧ୍ୟକୁ ଚାଲିଗଲା । ଫଳରେ ସେ ହେଲା ମୋହ ଗ୍ରସ୍ତ । ସମସ୍ତ ଦୁଃଖ ନର୍ଯ୍ୟାତନାକୁ ସେ ହସି ହସି ବରଣ କରିଥିଲା, କେବଳ ମୋହ ଗ୍ରସ୍ତ ହୋଇ । ମାତ୍ର ତାର ଶକ୍ତି ସାମର୍ଥ୍ୟ କେତେଦିନ । କେତେଦିନ ସେ ନିଜ ରକ୍ତରେ ଅନ୍ୟଙ୍କୁ ସନ୍ତୁଷ୍ଟ କରିବ । ଅବଶେଷରେ ସେହି ଚରମ ଦିନ ଯେତେବେଳେ ଉପଗତ ହେଲା ସେତେବେଳେ ଚିତ୍କାର କରି ଉଠିଲା । କିନ୍ତୁ ଶକ୍ତି ସାମର୍ଥ୍ୟ ବିହୀନ ସେ ଚିତ୍କାରର ମୂଲ୍ୟ କେତେ ? କର୍ମ ମୁଖର ଜଗତରେ ଅକର୍ମ କ୍ରନ୍ଦନ ଶୁଣୁଛି କିଏ ?

ମୋହଗ୍ରସ୍ତ ମାନବ ସେଦିନ ନିଜକୁ ତିଳ ତିଳ କରି ବଳି ଦେଉଥିଲା । ସେ ବଳିରେ ସେ ଆତ୍ମ ବିସ୍ମୃତ ହେଉଥିଲା । ଭୁଲିଥିଲା ସେ ନିଜେ ନିଜକୁ ।

ସେଦିନ ସେ ଜନ୍ମ ହେଲା । ଜନ୍ମବେଳେ ସେ ଉଚ୍ଚ କଣ୍ଠରେ ଚିତ୍କାର କଲା, ଏ କଣ ହେଲା—କିଏ—କଣ । ମାତ୍ର ଏହି କଣ୍ଠଫଟା ଚିତ୍କାରକୁ ରୋଧ କରିବାପାଇଁ ଜନନୀ ତା ମୁହଁରେ ଭରିଦେଲା ଅମୃତଧାରା । ସମ୍ରାଟ ଭଳି ସେ ହେଲା ଆଦରଣୀୟ । ତାର ସେହି ଦଅଁନ କୁଆଁ କୁଆଁ ଡାକ ଶୁଣିଲା ମାତ୍ରେ ଆତ୍ମୀୟ ସ୍ୱଜନ ବ୍ୟସ୍ତ ହୋଇ ପଡ଼ୁଥିଲେ । ତା ମୁଖରୁ ଋଦନ ଲିଭାଇବା ପାଇଁ ଜନନୀଠାରୁ ପରିଜନ ପର୍ଯ୍ୟନ୍ତ ସମସ୍ତେ ତତ୍ପର । କିନ୍ତୁ ଯେତେବେଳେ ଧୂମାବତୀ କବଳରେ ପଡ଼ି ଚିତ୍କାର କରୁଥିଲା ତାକୁ କେହି କର୍ଣ୍ଣପାତ ଶୁଣୁ ନଥିଲେ । ଶୁଣି ନ ଶୁଣିଲା ଭଳି ରହୁଥିଲେ । ଆହା ପଦେବ କାହାର ପାଟିରୁ ବାହାରୁ ନଥିଲା ।

ମାନବର ଏହି ଚରମ ସଙ୍କଟରେ ବ୍ରହ୍ମଚେତନା—ଆତ୍ମଚେତନା ପୂରା ପୂରି ଲୋପହୁଏ ନାହିଁ, ବ୍ରହ୍ମ ଯେ ଜୀବତ୍ୱର ସ୍ୱରୂପ, ଜୀବ ଯେ ବ୍ରହ୍ମଠାରୁ ଜନ୍ମ—ବ୍ରହ୍ମର ହିଁ ଅଂଶ । ସେଥିପାଇଁ ଯେତେବେଳେ ତାର ବ୍ରହ୍ମସ୍ମୃତି କ୍ଷୀଣ ହେଲେ ମଧ୍ୟ ଲୁପ୍ତହୁଏ ନାହିଁ । ଯାହାଦିନ ଧୂମାବତୀ କବଳରେ ପତିତ ନ ହେଲେ ମଧ୍ୟ ଯେଉଁ କେତୋଟି ଦିନ ତାର କରାଳ କବଳରେ ପଡ଼ି ଦୁର୍ବିସହ ଦୁଃଖ ଯାତନାରେ ଅସହାୟ ମଣେ ସେତେବେଳେ ବାଧ୍ୟହୁଏ ତା କବଳରୁ ମୁକ୍ତି ପାଇବାକୁ, ଜାଗିଉଠିଲା ତା ମଧ୍ୟରେ ସେହି କ୍ଷୀଣ ସ୍ମୃତି । ସତେ ମୁଁ ତ ଦୀନ ଦରିଦ୍ର ନୁହେଁ, ରୋଗ ଶୋକର ଅଧୀନ ନୁହେଁ । ତେଣୁ ହୀନ ହୃଦବାଟ୍ୟର ପ୍ରଶ୍ନ ଉଠୁଛି କାହିଁକି ? ମୋ ମଧ୍ୟରେ ସେହି ମହାଶକ୍ତି ଅଛି—ଯାହାର ଜାଗୃତି ଦ୍ୱାରା ବିଶ୍ୱ ପୁନର୍ବାର ଶ୍ରୀ ମଣ୍ଡିତ ହେବ । ସେହି ମହାଶକ୍ତିକୁ ଭୁଲି ମୁଁ ଶକ୍ତି-ହୀନ ହୋଇ ପଡ଼ିଛି—ତେଣୁ ଜାଗ୍ରତ କରିବାକୁ ହେବ ସେହି ଶକ୍ତିକୁ ।

ସେହି ଦୀର୍ଘ ଶୀର୍ଣ୍ଣଦେହା ଧୂମାବତୀ ଠାରୁ ଦୁରେଇ ଯିବାକୁ ସେ ଆପ୍ରାଣ ଚେଷ୍ଟା କଲା । ଯାହା ଯାଇଛି ତାହା ଯାଇଛି । ତା ପାଇଁ ଶୋଚନା କରିବା ବୃଥା ସନ୍ତାପ ହିଁ ଦୁଃଖର କାରଣ । ତାର କେହି ନାହାନ୍ତି, ସେ ବିଧବା, ଏହା ମଧ୍ୟ ନୁହେଁ । ସଙ୍କୀର୍ଣ୍ଣ ଗଣ୍ଡି ତାର ସଂସାର

ଯାହା ପାଇଁ ସେ ସନ୍ତାପିତ ତାକୁ ତ୍ୟାଗ କରିବାକୁ ପଡ଼ିବ । ତାର ସମସ୍ତେ ଅନନ୍ତ, ସାଗ ବର୍ଣ୍ଣିନ୍ତି ତାର । ତେଣୁ ସେ ଧାଇଁଥାନ୍ତି ସେହି ମହାମାୟା ମହାସ୍ରୋତରେ । ସେହି ସ୍ରୋତ ଧାଇଁ ଯାଉଥାଏ ସୁଧା ସମୁଦ୍ର ଆଡ଼କୁ ।

ସେହି ସୁଧା ସମୁଦ୍ର ମଧ୍ୟରେ ମଣିମୟ ମଣ୍ଡପ ରତ୍ନ ନିର୍ମିତ ବେଦୀ । ସେହି ବେଦୀ ଉପରେ ସିଂହାସନ । ସିଂହାସନ ଉପରେ ଉପବିଷ୍ଟା ପୀତବର୍ଣ୍ଣା ପୀତବସ୍ତ୍ର ପରିଧାନା ଦେବୀ । ଦେବୀଙ୍କର ସର୍ବାଙ୍ଗ ମାଲ୍ୟ ଓ ବିଭୂଷଣେ ବିଭୂଷିତ । ତାଙ୍କର ଏକ ହସ୍ତରେ ମୁଦ୍‌ଗର ଏବଂ ଅପରହସ୍ତ ବୈରୀ ଜିହ୍ୱା ।

ବୈରୀ ଜିହ୍ୱାକୁ, ବିରୁଦ୍ଧ ତାମସିକ ଶକ୍ତିକୁ ପ୍ରହାର କରି—ବିଚୂର୍ଣ୍ଣ କରି ଏହି ମହାଶକ୍ତି ଜାଗ୍ରତ କରନ୍ତି ସୁପ୍ତ ଅନ୍ତଃଚେତନାକୁ । ସେହି ଶକ୍ତି ଭବ ଦୁରନ୍ତ ଗୁରୁ ରୂପରେ—ଅଜ୍ଞାନ ଅନ୍ଧକାରକୁ ଜ୍ଞାନାଲୋକରେ ଉଦ୍‌ଭାସିତ କରି ଟାଣିନେବାକୁ ନୂତନ ପଥରେ । ସେ ଦେଖାନ୍ତି ସେହିପଦ—ସେହି ବ୍ରହ୍ମପଦ । ଯେଉଁ ପଦ ଦେଖିବାକୁ ଜନ୍ମ ଜନ୍ମ ଧରି ଛିନ୍ନମସ୍ତା ଧୂମାବତୀ ଜୀବନରେ ପଡ଼ିତ ନିଷ୍ପେଷିତ ହୋଇ ମଧ୍ୟ ଜନ୍ମ ହୋଇ ଆସିଛୁ ।

ଅସହାୟ ଶୀର୍ଣ୍ଣ କଙ୍କାଳସାର ମାନବ କଣ୍ଠରେ ଦିବ୍ୟ ଚେତନାର ଉଦ୍‌ବୋଧନ ମନ୍ତ୍ର ଡାଳ ଦିଅନ୍ତି ବଗଳାର ଅନୁଚର ଗୁରୁ । ସେ ଉଦ୍‌ବୋଧିତ ହୋଇ ଗୁରୁ ଦର୍ଶାଇଥିବା ପଥରେ ଧାଇଁ ଚାଲେ ହୃଦପୃଷ୍ଠରେ ଆତ୍ମ ସ୍ୱରୂପର ମଙ୍ଗଳମୟ ରୂପ ପ୍ରତିଷ୍ଠା କରି । ସେ ଧାରଣ କରେ ବୈରୀର ଜିହ୍ୱା ବାମ୍ ହସ୍ତରେ । ଦକ୍ଷିଣ ହସ୍ତରେ ଶୋଭାପାଏ ମୁଦ୍‌ଗର ରୂପି ମନ୍ତ୍ର—'ବାଚଂ ମୁଖଂ ସ୍ତମ୍ଭୟ, ଜିହ୍ୱାଂ କୀଳୟ ବୁଦ୍ଧିଂ ନାଶୟ ନାଶୟ' ।

ସେହି ବୈରୀଜିହ୍ୱା—ଯେ ଜୀବନକୁ- ବ୍ୟଷ୍ଟି ଚେତନାକୁ ଛଳନା କରି ମାନବକୁ କୁମ୍ଭୀପାକରେ ପକାଉଛି, ସେହି ବୈରୀର, ସେହି ଶତ୍ରୁର ଜିହ୍ୱାକୁ, ଗୁରୁଙ୍କର ତଥା ବିବେକର ଦର୍ଶିତ ପଥରେ ନିରୁଦ୍ଧ କରିବାକୁ ହେବ । ଅନ୍ତରର କାମନା ବାସନାକୁ ବିମର୍ଦ୍ଦିତ କରି ସମସ୍ତ ଆସୁରିକ ବୃତ୍ତିକୁ ଛିନ୍ନ କରିବାକୁ ହେବ । ତାହା ନ ହେଲେ ବଗଳାମୁଖୀର

ଆବିର୍ଭାବ ହୋଇଛନ୍ତି ଏହା କହିହେବ ନାହିଁ । ଧୂମାବତୀଙ୍କର ଧୂମ ଆବରଣ ତଳେ ଏବେ ବି ରହିଛନ୍ତି ଏହା କହିବା'ନ୍ତଡ଼ା ଅଥ୍ୟ ଭ୍ରାନ୍ତ କହିବା କେବଳ ପ୍ରବଞ୍ଚନା ମାତ୍ର ।

ଦେବୀ ଅପୂର୍ବ ଲୀଳାଭିନୟୀ । ଗୋଟିଏ ଅଙ୍କରେ ସେ ଯେଉଁଠି ଛିନ୍ନମସ୍ତା ଧୁମାବତୀ ହୋଇ ମାନବଙ୍କୁ ନିଷ୍ପେଷିତ କରେ ସେହିଭଳି ଅନ୍ୟ ଅଙ୍କରେ ବେଶଭୂଷା ପରିବର୍ତ୍ତନ କରି ମୁଦ୍‌ଗର ହସ୍ତରେ ପରିତ୍ରାତାରୂପେ ବଗଳା ମୂର୍ତ୍ତିରେ ଆବିର୍ଭୂତ ହୁଅନ୍ତି । ଅତି ଆଶ୍ଚର୍ଯ୍ୟ ତାଙ୍କର କର୍ମ । ସେ ଯେଉଁଭଳି ନିଷ୍ଠୁର ଭାବରେ ଛିନ୍ନମସ୍ତା ଧୂମାବତୀ ରୂପେ ଜୀବକୁ ନିଷ୍ପେଷିତ କରନ୍ତି ସେହିଭଳି ସନ୍ତାନ ବାତ୍ସଲ୍ୟ ସ୍ନେହ ଧରି ବଗଳାର ହୃଦୟା ହୋଇ ବଗଳାମୁଖୀ ରୂପରେ ଦର୍ଶନ ଦିଅନ୍ତି ।

ବିଶ୍ୱରେ ଏଭଳି ଜୀବ ନାହିଁ ଯେ କି ଛିନ୍ନମସ୍ତା ଏବଂ ଧୂମାବତୀଙ୍କ ବଳକରେପଡ଼ି ନିଷ୍ପେଷିତ ହୋଇନାହିଁ ଓ ହେବନାହିଁ । ନିଷ୍ପେଷିତ ସନ୍ତାନର ସନ୍ତାପ ଯେତେବେଳେ ସେହି ଜଗଜ୍ଜନନୀଙ୍କ କର୍ଣ୍ଣକୁହରରେ ବାଜିଉଠେ ସେତେବେଳେ ସେ ଗଦାଧାରଣ କରି ଦଣ୍ଡାୟମାନ ହୁଏ । ସନ୍ତାନର ଦୁଃଖ ମୋଚନ ପାଇଁ, ତାର ସେ ରୂପଦର୍ଶନ କରି ନିଷ୍ପେଷିତ ସନ୍ତାନ ଗଳଦେଶ ଏବଂ ସ୍କନ୍ଧଦେଶ ସହ ମସ୍ତକ ଶ୍ରଦ୍ଧାବନତ କରି ଆନନ୍ଦ ପୁଲକିତ ହୃଦୟରେ ଗାଇ ଉଠେ—

ଯାହାର ରମଣୀୟ ଗଣ୍ଡଦେଶରେ ସୁବର୍ଣ୍ଣକୁଣ୍ଡଳ ଦୋଦୁଲ୍ୟମାନ— ବଦନମଣ୍ଡଳ ଚନ୍ଦ୍ରଭଳି ଅତ୍ୟନ୍ତ ସୁନ୍ଦର, ପୁଣି ସେହି ଅପୂର୍ବ ସୌନ୍ଦର୍ଯ୍ୟରୁ ସ୍ୱର୍ଣ୍ଣଚମ୍ପକ ଆଭା ନିର୍ଗତ ହେଉଛି, ବିପକ୍ଷର ଲେଲିହସନାକୁ ଯେ ହାତଦ୍ୱାରା ଟାଣି ଗଦାଘାତେ ତାହାକୁ ଜର୍ଜରିତ କରୁଛନ୍ତି ସେହି ଦେବୀଙ୍କୁ ମୁଁ ସ୍ମରଣ କରୁଛି । ସୁଧା ସମୁଦ୍ର ମଧ୍ୟଭାଗରେ ଗୋଟିଏ ମଣ୍ଡପ—ତାହାର ମଧ୍ୟଭାଗରେ ସିଂହାସନ—ଚତୁର୍ଦ୍ଦିଗରେ ସୁରମ୍ୟ ରକ୍ତୋତ୍ପଳ ଫୁଟିଛି, ସିଂହାସନର ଶିରୋଭାଗରେ ଶତ୍ରୁର ମୃତଶରୀର, ତା ଉପରେ ବସି ସେ ଶତ୍ରୁର ରସନା ହସ୍ତଦ୍ୱାରା ଟାଣି ଟାଣି ସର୍ବଦା ଘୂର୍ଣ୍ଣନ କରୁଛନ୍ତି, ସ୍ୱର୍ଣ୍ଣଭଳି କାନ୍ତିମୟୀ ସେହି ବଗଳାମୁଖୀ ଦେବୀଙ୍କୁ ଯେ ଧ୍ୟାନ କରେ ତାର ସମସ୍ତ ବିପଦ ତତ୍‌କ୍ଷଣାତ୍ ଦୂରୀଭୂତ ହୁଏ ।

ମାତଃ ! ତୁମ ମୂର୍ତ୍ତିଦର୍ଶନରେ ଦୁଷ୍ଟବ୍ୟକ୍ତି ସ୍ତମ୍ଭିତ ହୋଇଥାଏ, ଅରି ବିଘ୍ନ ବିଦୂରିତ ହୁଏ, ଦାରିଦ୍ର୍ୟ ଅପସରିଯାଏ, ରାଜଧାତ୍ତି ପ୍ରଶମିତ ହୁଏ,

କାମିନୀବୃନ୍ଦଙ୍କୁ ସକଳେ ଆକୃଷ୍ଟ କରାଯାଏ, ସୌଭାଗ୍ୟ ଲାଭ ହୁଏ, ମୃତ୍ୟୁଭୟ ଘୁଞ୍ଚିଯାଏ, କରୁଣାମୃତ ପୂର୍ଣ୍ଣ ତୁମର ଏହି ମୂର୍ତ୍ତି ମୋର ସଦା ଦୃଷ୍ଟିପଥାରୂଢ଼ ହେଉ ।

ଜନନୀ ! ତୁମେ ବିପକ୍ଷର ମୁଖ ବାନ୍ଧିଦେଇ ତାଙ୍କ ରସନା ସ୍ତମ୍ଭିତ କରି, ତାର ବାକ୍‌ଶକ୍ତି ଓ ବୁଦ୍ଧିନାଶ କରି ଗତିସ୍ତମ୍ଭିତ କର । ହେ ଦେବୀ ତୁମେ ଗଦାଘାତରେ ଅରିକୁଳଙ୍କୁ ଚୂର୍ଣ୍ଣିତ କରିଥାଅ ପ୍ରଣତ । ବ୍ୟକ୍ତିମାନଙ୍କ ପ୍ରତି କରୁଣା ଥିବାଯୋଗୁଁ ତୁମ ନେତ୍ର ସର୍ବଦା ଦୟାର୍ଦ୍ର ।

ମାତଃ ! ତୁମେ ଭୈରବୀ, ତୁମେ ଭଦ୍ରକାଳୀ, ତୁମେ ବିଜୟା ତୁମେ ମଧ୍ୟ ବଗଳାମୂର୍ତ୍ତି ଧାରଣୀ ସମସ୍ତଦଶଙ୍କୁ ଆଶ୍ରୟ ଦେଇ ତୁମେ ଶ୍ରୀବିଦ୍ୟା । ହେ ବଗଳେ ! ତୁମେ ମହେଶୀ, କାମେଶ୍ୱରୀ, ରମା, ଉମା, ମାତଙ୍ଗୀ, ତ୍ରିପୁରା, ପରାତ୍ପରତରା—ତୁମେ ସ୍ୱର୍ଗ-ମୋକ୍ଷ ପ୍ରଦାୟିନୀ— ଏ କିଙ୍କର ସଦା ତୁମ ଶରଣାପନ୍ନ । ତାକୁ ଦୟାକରି ରକ୍ଷାକର ।

ବଗଳାଙ୍କର ଆଶୀର୍ବାଦରେ ସଂସାର ଅସାରବୁଦ୍ଧି ନାଶ ହୁଏ । 'ବୁଦ୍ଧିଂ ନାଶୟ ନାଶୟ' । ଏ ମିଥ୍ୟା ପ୍ରବଞ୍ଚନା ପ୍ରଭୃତି କଳୁଷବାକ୍ୟ ଜିହ୍ୱା ସଂଯତହୁଏ । ଜିହ୍ୱାଂ କୀଳୟ କୀଳୟ । ବହୁ କୁବାକ୍ୟ ଏହି ରସନା କହିଛି, ବହୁ କୁଖାଦ୍ୟ ଏହି ରସନା ଗ୍ରହଣ କରିଛି । ସେହି ପବଣ ବଗଳାଙ୍କ ମନ୍ତ୍ରଜପ କରିବାକୁ ହେଲେ ରସନା ସଂଯତ କରିବାକୁ ହେବ । ତାହା ନ ହେଲେ ସେ ମନ୍ତ୍ର ଏ ରସନା ଉଚ୍ଚାରଣ କରିବ କପରି ?

ଏ ଦେହରେ ବହୁଦୁଷ୍ଟ ଅନନ୍ତ । ସର୍ବଦା ସେମାନେ ବ୍ୟକ୍ତିଙ୍କୁ ଅବାଟରେ ନିବାକୁ ପ୍ରବର୍ତ୍ତାଉଛନ୍ତି । ତେଣୁ 'ସର୍ବ ଦୁଷ୍ଟାନାଂବାଚଂ ମୁଖଂସ୍ତମ୍ଭୟ ଜିହ୍ୱାଂ କୀଳୟ' ।

ଯେତେବେଳେ ଶତ୍ରୁମାନେ ସ୍ତମ୍ଭିତ ହେବେ—ମୁଖରୁ ଅନର୍ଗଳ ସେହି ଅମିୟନାମ ଉଚ୍ଚାରିତ ହେବ, ସେତେବେଳେ ଏ ହୃଦ ସମୁଦ୍ରକୁ ଉଦ୍‌ବେଳିତ କରି ଜନନୀ ବଗଳା ଦର୍ଶନ ଦେବେ ଶତ୍ରୁ ନାହିଁ—ଭୟ ନାହିଁ—ବିଦୂରିତ ହୋଇଛି ସେହି ଶୀର୍ଣ୍ଣଦେହା ଧୂମାବତୀ । ଆଖି ଆଗରୁ ଲିଭିଯାଇଛି ସେହି ଘନତମିରର ନିବିଡ଼ ଅନ୍ଧକାର । ଦାରିଦ୍ର୍ୟ ଅନ୍ଧକାର ବଦନରେ ଦେଖାଦେଇଛି ବଗଳାର ସ୍ୱର୍ଣ୍ଣ ଛଟା । ସ୍ୱର୍ଣ୍ଣ ପ୍ରାପ୍ତିରେ ଆଉ ଦାରିଦ୍ର୍ୟର କଷାଘାତ ରହିବ କେଉଁଠି ? ତେଣୁ ହୃଦୟ ସମୁଦ୍ରରେ

ଫୁଟିଉଠିବ ଉତ୍କ୍ରୋଧିକ । ମଣିମଣ୍ଡପ ରତ୍ନବେଦୀ ଉପରେ ଶତ୍ରୁର ମୂର୍ତ୍ତି ଶରୀର—ସେ ଶତ୍ରୁ, ଦାରିଦ୍ର୍ୟ, ଦୁଃଖ, ଭୟ, ରୋଗ, ଶୋକ । ସମସ୍ତଙ୍କୁ ବଧକରି ଦେବୀ ଯେତେବେଳେ ଆସନ ପାତିବେ ସେତେବେଳେ ଜୀବ ବର୍ତ୍ତମଗର୍ତ୍ତରେ କୁମ୍ଭୀପାକ ନର୍କଠାରୁ ଫେର ଗୁଳବ ଊର୍ଦ୍ଧ୍ୱଗତି ହୋଇ । ମୁକ୍ତ ହେବ ଏ ଜୀବର—ଏ ବିଶ୍ୱର ।

ଶତ୍ରୁମାନେ ତାର ଷଡ଼ ହୋଇଛନ୍ତି—ତେଣୁ ତାକୁ ବିପଥଗାମୀ କରିବାକୁ କେହି ନାହାନ୍ତି । ଏଣିକି ସେ ମତମାତଙ୍ଗପରି ଛୁଟି ଗୁଳବ ଉଜ୍ଜ୍ୱଳ ପଥରେ ।

ଶିବଙ୍କ ବାଣୀ ଶ୍ରବଣ କରି ନାରଦ ଆକାଶ ମାର୍ଗରେ ମଙ୍ଗଳଗ୍ରହଙ୍କ ଉପରେ ବଗଳାମୁଖୀଙ୍କୁ ଥରକୁ ଥର ଲକ୍ଷ୍ୟ କରିବାକୁ ଲାଗିଲେ । ଦେବୀଙ୍କ ସ୍ୱରୂପ ଦର୍ଶନରେ ନାରଦଙ୍କ ହୃଦ ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଲା । ସେ ବଗଳାମୁଖୀଙ୍କ ମନ୍ତ୍ର ଓଁ ହ୍ଲୀଂ ବଗଳାମୁଖୀ ସର୍ବଦୁଷ୍ଟାନାଂ ବାଚଂ ମୁଖଂ ସ୍ତମ୍ଭୟ ଜିହ୍ୱାଂ କୀଳୟ ବୁଦ୍ଧିଂ ନାଶୟ ହ୍ଲୀଂ ଓଁ ସ୍ୱାହା ଜପ କରିବାକୁ ଲାଗିଲେ । ଶିବ କହି ଉଠିଲେ ବଗଳାମୁଖୀଙ୍କର ଏହି ଷଟ୍‌ତ୍ରିଂଶାକ୍ଷର ମନ୍ତ୍ର ସର୍ବସମ୍ପଦପ୍ରଦ । ଶତ୍ରୁ ସ୍ତମ୍ଭନ କାର୍ଯ୍ୟ ବଗଳାମୁଖୀଙ୍କ ପୂଜା ପ୍ରୟୋଗ କରିବା ବିଧେୟ ।

ନାରଦ ଆକାଶମାର୍ଗରେ ବଗଳାମୁଖୀଙ୍କୁ ପୁନଃ ପୁନଃ ଦର୍ଶନ କରି ପ୍ରଣାମ କରିବାକୁ ଲାଗିଲେ । ଜଗତ୍‌ପିତା ଶିବ ଯେଉଁ ଦେବୀଙ୍କ ପ୍ରଥମ ସାଧକ ରୂପେ ବିଦିତ ତାଙ୍କ ଆଡ଼କୁ ଚକ୍ଷୁ ଅବନତ କରି ଦେବୀଙ୍କ ସମ୍ବନ୍ଧରେ ଆଉ କିଛି ଶୁଣିବାକୁ ଅନାଇଲା ମାତ୍ରେ ଶିବ କହିଉଠିଲେ ବର୍ତ୍ତମ ଗର୍ତ୍ତରେ ଜୀବ କିପରି ଧାଇଁଆସୁଛି ଦେଖ । ସନ୍ତାନ ପାଇଁ ଜନନୀ ସବୁକିଛି କରିପାରେ ସବୁ କିଛି ହୋଇପାରେ । ଭୋଗାସକ୍ତ ଏହି ବିଶ୍ୱରେ ଜନ୍ମଗ୍ରହଣ କରି ମାନବ ଯେତେବେଳେ ଭୋଗ କରିବା ବାସନା ନେଇ ଛିନ୍ନମସ୍ତା ହେବାକୁ ଗଲା ସେତେବେଳେ ସେ ପରିଣାମ ବିଷୟରେ ଟିକିଏ ହେଲେ ଚିନ୍ତା କଲାନାହିଁ । ନିଜର ରକ୍ତ ଅନ୍ୟଙ୍କୁ ଦାନକରି, ନିଜେ ପାନକରି ସେ ଅତିବାହିତ କଲା ଦୀର୍ଘଦିନ । ତା'ପରେ ତା ଦେହରୁ ଯେତେବେଳେ ଶକ୍ତି ସରିଆସିଲା ସେ ଦୁର୍ବଳ ହୋଇପଡ଼ିଲା ସେତେବେଳେ ସେ ବୁଝିଲା ମୁଁ ଭୁଲ କରିଛି, ଭୁଲକୁ ସଂଶୋଧନ କରି ପୁଣି ସେ ମହାନନ୍ଦଅନ୍ତୁ

ଫେରିବା ପାଇଁ ସେ ଦୋକାନ ମଧ୍ୟ ତା ମନରେ ଉତ୍ସାହ ଆସିଲା ନାହିଁ । ତାର ଅନ୍ଧକାରରେ ସେ ନିକ୍ଷେପିତ ହେଲା ଧୂମାବତୀଙ୍କ କବଳରେ ।

ଧୂମାବତୀଙ୍କ ଅସ୍ଥି କଙ୍କାଳସାର ଅଙ୍ଗରେ ସ୍ନେହଗନ୍ଧହୀନ ମନଟାର ରୂପ ହେବ କଠୋର ହେଣୁ ସେ ଧୂମାବତୀଙ୍କ ଭଳି ହୋଇ ହାହାକାର କରିବାକୁ ଲାଗିଲା । ଗୋଟିଏ ମୁହୂର୍ତ୍ତ ଜଣାଗଲା ଯେପରି ଗୋଟିଏ ଯୁଗ । ଅଭାବ, ଅନାଟନ, ରୋଗ, ଶୋକ ତାକୁ ମୂହ୍ୟମାନ କରି ପକାଇଲା । ସେ ଯେତେ ଡାକି ଡାକି ଡାକିଲେ ତାକୁ ଶୁଣୁଛି କିଏ ? ଶେଷରେ ସେ ସେହି ଧୂମାବତୀଙ୍କ ଶରଣାପନ୍ନ ହେଲା । ଧୂମାବତୀ ପ୍ରଦାନ କଲେ ବାମମାର୍ଗ ତନ୍ତ୍ରମାର୍ଗରେ କେଉଁଭଳି ଭୟଙ୍କର ରୂପଠାରୁ ମୁକ୍ତି ଲଭି ହୁଏ ବୋଲି ବଗଳାମୁଖୀଙ୍କ ପାଖକୁ । ଦେବୀ ବଗଳାଙ୍କ ପଦଶରେ ଆସି ନିଜେ ନିଜକୁ ସେ ବାନ୍ଧିପାରିଲା । ତା' ମଧ୍ୟରେ ସେ ଦେଖିଲା ସର୍ପର ବାସସ୍ଥଳ କାଳିନ୍ଦୀ ଜଳାଶୟ ଆଉ ନାହିଁ । ସବୁ ଆକାଂକ୍ଷିତ ମନ ତାର କେବଳ ଗୋଟିଏ ଚିନ୍ତାରେ ବ୍ୟାକୁଳ ! ସେ ଚିନ୍ତା ନୁହେଁ ତାମସିକ । ସେ ଚିନ୍ତା ରାଜସିକ । ସାଧକ ରାଜସିକରେ ପଦାର୍ପଣ କରି ତାର ସେ ଭୟବିଦ୍ରୂପ ଦେଖିଲା ଏଡ଼ା ନୁହେଁ । କିନ୍ତୁ ତାମସିକ ଭଳି ରାଜସିକରେ ଏତେ ଭୟଙ୍କରତା ନାହିଁ, ଏତେ ଦୁଃଖ ନାହିଁ । ସାପର ମୁଖଗହ୍ୱର ଠାରୁ ସର୍ପ କୃଷ୍ଣ କେଉଁର ଦଂଶନ ବଡ଼ ଯନ୍ତ୍ରଣା ବଡ଼ ଭୟପ୍ରଦ । କିନ୍ତୁ କେଉଁଭଳି ମଙ୍ଗଳ ଯନ୍ତ୍ରଣାଦାୟକ ଭୟପ୍ରଦ ନୁହଁନ୍ତି ।

ଯୋଗୀପୁରୁଷ ମଙ୍ଗଳ ରାଜସିକ ଅବତାର । ମଙ୍ଗଳ ଭଳି ବଗଳାଶତ୍ରୁ ବିଧ୍ୱଂସିନୀ । ଜନ୍ମ ପରେ ଜନ୍ମ ହୋଇ ଜୀବ ବଢ଼ିଲା, ଗତିରେ ଆଗକୁ ଧାଇଁଚାଲେ ଯେଉଁ ଭଳି ନଦୀ ସମୁଦ୍ରରେ ମିଶିବା ପାଇଁ, କତ ପ୍ରସ୍ତୁତିତ ହେବା ପାଇଁ ଆଗ୍ରହୀ ହୋଇ ଆଗେଇ ଚାଲିଆନ୍ତି । ଜୀବ— ସାଧକ ଯେତେବେଳେ ତାମସିକରୁ ରାଜସିକରେ ପଦାର୍ପଣ କରେ ସେତେବେଳେ ନିଜକୁ ଭାଗ୍ୟବାନ ବୋଲି ମନେକରେ । ସେଇଠାରେ ସାଧକ ରହିଯାଏ ନାହିଁ । ଯାହାର ଲକ୍ଷ୍ୟପରଶ ମଣିରେ ସେ କଣ ସୁନା ଖଣ୍ଡେ ପାଇ ସେଇଠାରେ ରହିଯାଇପାରେ ? ତେଣୁ ସେ ଧାଇଁଚାଲେ ଆହୁରି ଆଗକୁ—ସେହି ସାତ୍ତ୍ୱିକ ସ୍ତରରେ ନିଜକୁ ହଜାଇ ଦେବାକୁ । ତେଣୁ ମା ବଗଳାମୁଖୀ ପରେ ମାତଙ୍ଗୀରୂପ ଧାରଣ

କରେ । ଐଶ୍ୱର୍ଯ୍ୟମୟୀ ବଗଳାଙ୍କଠାରୁ ଜୀବ ମୃତ୍ୟୁମାତଙ୍ଗ ଭଳି ଲୁଚିଯାନ୍ତି । ନଜରକୁ ମାତଙ୍ଗ ଭଳି ସାଧନା ଦ୍ୱାରା ନ କରିପାରିଲେ ମାତଙ୍ଗୀଙ୍କ ଅନୁଗ୍ରହ ମିଳିପାରିବ ନାହିଁ । ହେଇ ନାରଦ ! ଭବ ମହାରୁଦ୍ରଙ୍କୁ ଗ୍ରହିଁ ଦେଖ ସୂର୍ଯ୍ୟଙ୍କ ସମସ୍ତ ତେଜକୁ କବଳିତ କରି ଦେବୀ ମାତଙ୍ଗୀ କିଭଳି ଦୃଶ୍ୟମାନ ହେଉଛନ୍ତି ।

ଅନ୍ଧାରର ବକ୍ଷଚିର ସମସ୍ତ ଅନ୍ଧାର ବଦୂରିତ କରି ଆଗେଇ ଯାଉଥିବା ସହସ୍ରାଂଶୁ ରବିଙ୍କୁ ନାରଦ ଲକ୍ଷ୍ୟକଲେ । ସେ ଦେଖିବାକୁ ପାଇଲେ ଶୂନ୍ୟରେ ଏକ ମହାଦେବୀ ଉପବିଷ୍ଟା, ଦେବୀଙ୍କର ଶ୍ୟାମ ଅଙ୍ଗକାନ୍ତି ସୂର୍ଯ୍ୟଙ୍କ ଶୁଭ୍ରତାକୁ ବୋଡ଼ାଇ ପକାଇଛି । ଏକ ରତ୍ନନିର୍ମିତ ସିଂହାସନରେ ଦେବୀ ଆସୀନା । ତାଙ୍କର ଚାରୋଟି ହସ୍ତ ଏବଂ ଏହି ଚାରି ହସ୍ତର ଊର୍ଦ୍ଧ୍ୱ ଦକ୍ଷ କରରେ ଖଡ୍ଗ ଅଧଃରେ ଅଙ୍କୁଶ ଓ ବାମକର ଊର୍ଦ୍ଧ୍ୱରେ ଖେଟକ ଅଧଃରେ ପାଶ ଶୋଭାପାଉଛି । କଣ୍ଠ ଦେଶରେ ବୈଡ଼ୁର୍ଯ୍ୟହାର । ସୂର୍ଯ୍ୟ ଚନ୍ଦ୍ର ଓ ଅଗ୍ନି ଦେବୀଙ୍କ ତ୍ରିନେତ୍ରରେ ଅବସ୍ଥାନ କରିଛନ୍ତି । ଦେବୀ ମୁକ୍ତକେଶୀ ଏବଂ ମସ୍ତକରେ ଅର୍ଦ୍ଧଚନ୍ଦ୍ର । ମାତଙ୍ଗ ଭଳି ଦେବୀ ମଧ୍ୟ ପୃଥୁଳ ଶରୀର ।

ଜନନୀ ଇଚ୍ଛାମୟୀ । ଜୀବ ଯେଉଁଭଳି ବାଉନ୍ଧ ଅବସ୍ଥାରେ ପତିତ ହୋଇଥାଏ, ଜନନୀ ସେହିଭଳି ବାଉନ୍ଧ ଭାବେ ସନ୍ତାନକୁ ଦେଖାଦେଉଛନ୍ତି । ଏହି ସମସ୍ତ ରୂପ ଏକ ଏବଂ ଅଦ୍ୱିତୀୟ । ତାର ମହିମାରେ ବିଶ୍ୱ ମହିମାନ୍ୱିତ । ଦୁଃଖ ବିପଦରେ ସନ୍ତାନ ଯେଉଁଭଳି ପତିତ ହୁଏ ଜନନୀ ଠିକ୍ ସେହିଭଳି ରୂପ ଧାରଣ କରେ । ସେଥିପାଇଁ ଦୁଃଖ କରିବାର ନାହିଁ । ସନ୍ତାନ ପାଇଁ ଯଦି ଜନନୀ ନିମ୍ନସ୍ତରକୁ ଓହ୍ଲାଇ ଆସେ ସେଠାରେ ସନ୍ତାନ ଦୁଃଖ କରିବ କାହିଁକି ? ତାର ଜନନୀ ତାହାର ନିକଟରେ, ତାହାର ଭଳି ଅବସ୍ଥାନ କରିଛି ।

ଷୋଡ଼ଶୀଙ୍କ ଭଳି ମାତଙ୍ଗୀ ଧନୁଶର [illegible] ସେ ଘୋର କରି [illegible] ହାକୁ [illegible] ନାହିଁ । [illegible] ଧାରଣ କରି ଯେଉଁଭଳି ମୋହମାୟା ଛେଦନ କରୁଛନ୍ତି ଠିକ୍ ସେହିଭଳି ଅଙ୍କୁଶ ଦ୍ୱାରା ପଶୁବୃତ୍ତି ଜୀବକୁ ମୁକ୍ତିପ୍ରଦାନ କରୁଛନ୍ତି । ତାଙ୍କ ନୟନରେ ପତିତ ହେଲେ ସେ ପଶୁବୃତ୍ତିକୁ ବନ୍ଦକରି ତାର ଅଜ୍ଞାନତାକୁ

ଜ୍ଞାନ ଖଡ୍ଗ ଦ୍ୱାରା ଛେଦନ କରନ୍ତି । ଖେଟକ ଦ୍ୱାରା ସମସ୍ତ ପାପତାପକୁ ଚୂର୍ଣ୍ଣବିଚୂର୍ଣ୍ଣ କରନ୍ତି । ଯେତେବେଳେ ମାନବର ସମସ୍ତ ମୋହ ଅନ୍ଧକାର ବିଦୂରିତ ହୁଏ ସେତେବେଳେ ଜ୍ଞାନର ବୀଣା ବାଜିଉଠେ । ଦୂରଦୂରାନ୍ତରେ ତାର ଧ୍ୱନି ପ୍ରତ୍ୟେକଙ୍କୁ ଆକୃଷ୍ଟ କରେ । ସେହି ରାଗିଣୀର ଛନ୍ଦ ବିରାଟ ।

ମାତଙ୍ଗ ଯେଉଁଭଳି ବିରାଟ ସେହିଭଳି ତାର ଆଖି ବିରାଟ ନୁହେଁ । ତେଣୁ ସେ ନିଜକୁ ବି ଭଲ ଭାବେ ଦେଖିପାରେନା । ମାତଙ୍ଗୀ ଦେବୀ ସେହିଭଳି । ତାର ବିରାଟତା ମାପିବାର ଶକ୍ତି କାହାରି ନାହିଁ । ସାଧକ ଯେତେବେଳେ ଶବ୍ଦାଣୀମା ମଣିମଣ୍ଡ ସିଂହାସନସ୍ଥା ମହାଦେବୀ ଭଗବତୀଙ୍କଠାରୁ ଆନ୍ତର ଉର୍ଦ୍ଧ୍ୱକୁ ଗତିକରେ ସେତେବେଳେ ମାତଙ୍ଗୀ ଦେବୀଙ୍କୁ ଦର୍ଶନ କରେ । ସେତେବେଳେ ସେ ଏ ବସ୍ତୁବାଦୀ ବିଶ୍ୱଠାରୁ ବହୁତ ଦୂରରେ । ସେ ପାଗଳଙ୍କ ଭଳି ନାଚେ, ଗାଏ । ସେ ଗାନର ମାଧୁର୍ଯ୍ୟ କାହାରିକୁ ଆକୃଷ୍ଟ କରେ କି ନା ତାହା ସେ ଜାଣିପାରେ ନାହିଁ—ଜାଣିବା ମଧ୍ୟ ତାଙ୍କର ଆବଶ୍ୟକତା ନାହିଁ । ଲୋକେ ତାଙ୍କୁ ପାଗଳ ବୋଲି କହିପାରନ୍ତି, ମାତ୍ର ଲୋକ ନିନ୍ଦା ବା ପ୍ରଶଂସାକୁ ତାଙ୍କର ଭ୍ରୂକ୍ଷେପ ନ ଥାଏ । ସେ ମତ୍ତମାତଙ୍ଗ ଭଳି ବୁଲୁଥାନ୍ତି । ତାଙ୍କର ବନ୍ଧନ ନାହିଁ । ଅନ୍ୟର ପଶୁତ୍ୱକୁ ବନ୍ଧନ ନିମିତ୍ତ ସେ ସ୍ୱହସ୍ତରେ ପାଶ ଧାରଣ କରିଛନ୍ତି । ସଂସାର ବନ୍ଧନରେ ଯେଉଁମାନେ ବାନ୍ଧିହୋଇ ଛଟପଟ ହେଉଛନ୍ତି ତାକୁ ଛିନ୍ନ କରିବାକୁ ତାଙ୍କ ହସ୍ତରେ କରବାଳ ଶୋଭା ପାଉଛି । ବିଶ୍ୱକୁ ନିୟନ୍ତ୍ରିତ କରିବାର ଶକ୍ତି ତାଙ୍କଠାରେ ନିହିତ । ତେଣୁ ସେ ଅଙ୍କୁଶ ଧରି ବିଜ୍ଞାପିତ କରୁଛନ୍ତି ଏ ବିଶ୍ୱର ଏକମାତ୍ର ନିୟନ୍ତ୍ରଣକର୍ତ୍ତ୍ରୀ ମୁଁ । ସମସ୍ତ ମାୟାମୋହ ମୋ ପାଖରେ ଚୂର୍ଣ୍ଣବିଚୂର୍ଣ୍ଣ ମୋର ଖେଟକ ଦର୍ଶନ କରି ମାୟାମୋହ ଦୂରରୁ ଦୂରକୁ ପଳାୟନ କରେ ।

ସାଧକର ଏ ଅବସ୍ଥା ଶେଷ ଅବସ୍ଥା ନ ହେଲେ ମଧ୍ୟ ଏ ଅବସ୍ଥା ଅତି ଉଚ୍ଚ ସ୍ତରର ଅବସ୍ଥା । ରାଜସିକଠାରୁ ଶୀଘ୍ର ପୁନର୍ବାର ତାମସିକ ଆଡ଼କୁ ଫେରିଯାଇପାରେ ମାତ୍ର ଏ ଅବସ୍ଥାର ନିମ୍ନଗତି ହୁଏ ନାହିଁ । ସଂସାରର ଦ୍ୱାନଲଇଠାରୁ ସେ ଯେତେବେଳେ ଦୂରରେ ସେତେବେଳେ ସଂସାର ତାକୁ କବଳିତ ନ କରି ସେ ସଂସାରକୁ କବଳିତ କରେ । ତାର କଣ୍ଠସ୍ୱର ବୀଣାର ରାଗିଣୀ ଭଳି ଅନ୍ୟ କାନକୁ ଶୁଭିଯାଏ । ଅଜ୍ଞାନମାନେ

ତାଙ୍କୁ ଥଟ୍ଟା ପରିହାସ କରନ୍ତି—ତାଙ୍କୁ ସିଂଆଣା ପାଗଳ ଭଳି କହନ୍ତି । ମାତ୍ର ସେସବୁ ଶୁଣି ବି ଶୁଣିପାରେ ନାହିଁ । ତାର ଅନ୍ୟ କେହି କ୍ଷତି କରିପାରନ୍ତି ନାହିଁ । ଅନ୍ୟର ହୀନ ମନୋବୃତ୍ତି ତା ପକ୍ଷରେ ଆଶୀର୍ବାଦ ଭଳି କାମ କରେ । ମହାଦେବୀ ମାତଙ୍ଗୀ ଯାହାକୁ କୃପାନେତ୍ରରେ ଚାହିଁଥାନ୍ତି ତାର କିଏ କଣ କରିପାରିବ ? ବରଂ ତାର ମନ୍ଦଚିନ୍ତା କରୁଥିବା ବ୍ୟକ୍ତି ମହାଦେବୀଙ୍କ କୋପ ଦୃଷ୍ଟିରେ ଆସିଥାନ୍ତି । ଫଳରେ ତା ଭାଗ୍ୟାକାଶରେ ଧୂମ୍ରକେତୁ ଉଦୟ ହୁଏ । ଯେତେବେଳ ପର୍ଯ୍ୟନ୍ତ ସେ ତା କୃତକର୍ମ ପାଇଁ ଶୋଚନା କରି ସାଧକ ନିକଟରେ କ୍ଷମାପ୍ରାର୍ଥନା ନ କରିଛି ସେପର୍ଯ୍ୟନ୍ତ ତାର ନିସ୍ତାର ନାହିଁ ।

ମାତଙ୍ଗୀର ସାଧକ ମହାପ୍ରେମରେ ଉଦ୍‌ବୁଦ୍ଧ । ସେହି ପ୍ରେମ ବିଶ୍ୱକୁ ଆକୃଷ୍ଟ କରେ । ସେ ଜ୍ଞାନ ଅଜ୍ଞାନଠାରୁ ବହୁ ଦୂରରେ । ସତେ ଯେପରି ସେ ମାତଙ୍ଗୀଙ୍କ ଦ୍ୱାରା ଆବେଶ । ସାଧକ ଜୀବନର ଶେଷ ପରିଣତି ଏହି ଅଧ୍ୟାୟରେ ଘଟିଥାଏ । ତାର ଚିତ୍ତଭୂମି ସ୍ୱଚ୍ଛପବିତ୍ର ହେବା ହେତୁ ତା ମଧ୍ୟରେ ଜନନୀର ଆବିର୍ଭାବ ଘଟେ । ଜନନୀ ତା ନିକଟରେ ପ୍ରିୟା ପ୍ରିୟତମା—ଭଗ୍ନୀ—ମାତା । ଜନନୀ ବ୍ୟତୀତ ତାର ଆଉ କେହି ବିଶ୍ୱରେ ନାହିଁ । ସେ ଏବଂ ମହାଶକ୍ତି ମଧ୍ୟରେ କୌଣସି ପ୍ରଭେଦ ନ ଥାଏ । ମାତଙ୍ଗୀର ସାଧକ ସୂର୍ଯ୍ୟ ଭଳି ଦୀପ୍ତିମାନ ହୋଇଉଠେ । ବିଶ୍ୱକୁ ଆଲୋକିତ କରିବା ପାଇଁ ମାତଙ୍ଗୀଠାରୁ ସୂର୍ଯ୍ୟ ଉତ୍ପନ୍ନ ହେଲେ । ମାତଙ୍ଗୀର ଶୁଭ୍ରତା ସୂର୍ଯ୍ୟ ଗ୍ରହଣ କରି ଉଦିତ ହେବା ହେତୁ ମାତଙ୍ଗୀ ଶ୍ୟାମବର୍ଣ୍ଣା । ସୂର୍ଯ୍ୟର ତେଜ ମାତଙ୍ଗୀଙ୍କର । ସେ ଯଦି ପୁନର୍ବାର ସେ ତେଜ ଗ୍ରହଣ କରନ୍ତି ସୂର୍ଯ୍ୟର ଅନ୍ଧକାର ମଧ୍ୟରେ ବିଲୀନ ହେବେ । ତେଣୁ ମାତଙ୍ଗୀର ସାଧକ ସୂର୍ଯ୍ୟ ଭଳି ଦୀପ୍ତିମନ୍ତ ହୋଇଥାଏ ।

ଦେବୀର ସାଧକ ଭୋଗ ଓ ତ୍ୟାଗର ଜ୍ୱଳନ୍ତ ପ୍ରତୀକ । ସେ ମଦ୍ୟ-ମାଂସ-ମତ୍ସ୍ୟ-ମୈଥୁନ-ମୁଦ୍ରା ଦ୍ୱାରା ମହାଦେବୀଙ୍କୁ ଆରାଧନା କରେ । ଏଭଳି ଆରାଧନା ବଡ଼ କଷ୍ଟ । ସିଦ୍ଧପୁରୁଷ ନ ହେଲେ ଏ ଆରାଧନା କରି ହେବ ନାହିଁ । ଏ ହୃଦୟ ଶ୍ମଶାନରେ ଷଡ଼ରିପୁଙ୍କର ଚିତା ହୁ ହୁ ହୋଇ ଜଳୁଛି ପ୍ରକୃତି ରୂପିଣୀ ମହାବିଦ୍ୟାମାନେ ଦଶଦିଗ ଆଲୋକିତ ସାଧକକୁ ଲକ୍ଷ୍ୟ କରୁଛନ୍ତି । ସାଧକର ମନ ପ୍ରବୃତ୍ତି ମାର୍ଗରୁ ନିବୃତ୍ତି ମାର୍ଗକୁ ଆସିଛି ସେଥିପାଇଁ ପଞ୍ଚ 'ମ' କାର ପୂଜାର ଆବଶ୍ୟକ । ଦେବୀଙ୍କର

ଆରାଧନା ତାମସିକ ନୁହେଁ କିମ୍ବା ରାଜସିକ ନୁହେଁ ପୂର୍ଣ୍ଣରୂପେ ସାତ୍ତ୍ୱିକ । ତେଣୁ ଦେବୀ ବା ଦେବୀଙ୍କ ଚରଣପାଖରେ ହେଉଥିବା ତନ୍ତ୍ରମତର ପୂଜାର ପ୍ରସାଦ ମହାପ୍ରସାଦ ବୋଲି ଗଣ୍ୟ । ଏହି ପ୍ରସାଦ ପାଖରେ ଜାତିଅଜାତି ଉଚ୍ଚନୀଚ ବାରଣ ନାହିଁ । ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଏକତ୍ରିତ ହୋଇ ପ୍ରସାଦ ସେବା କରିବେ । ଏ ବିଷୟରେ ତନ୍ତ୍ର ଶାସ୍ତ୍ରମାନଙ୍କରେ ବିସ୍ତୃତ ଆଲୋଚନା କରିବ । ତାହା ପୁଣି ମହାଦେବୀଙ୍କୁ ଜଣାଇ ତାଙ୍କ ଅନୁମୋଦନ ଗ୍ରହଣ କରିବ । କାରଣ ମୁଁ ଦ୍ରଷ୍ଟା । ଯାହା ଦେଖିଲି ତାହା ଠିକ୍ କି ଭୁଲ ମହାଦେବୀଙ୍କ ଅନୁମୋଦନ ନ ହେଲେ ତାହା କିଏ ଗ୍ରହଣ କରିବ ?

ରାଜସିକତାର ମୂର୍ତ୍ତି ପ୍ରତିଷ୍ଠିତ ବଗଳାଙ୍କଠାରୁ ସାଧକ ଊର୍ଦ୍ଧ୍ୱ ଗତିରେ ଛୁଟିଚାଲିଲେ ମାତଙ୍ଗୀଙ୍କ ଆଶ୍ରୟ ନେଇ ମତମାତଙ୍ଗ ଭଳି ହୋଇଥାଏ । ସେତେବେଳେ ସେ ଭକ୍ତି ବିଭୋର ହୋଇଥାଏ । ତା ମୁଖରେ ସେହି ଏକ ମହାଶକ୍ତିର ନାମ ଗୁଣ ସଙ୍ଗୀତାକାରରେ ଉଚ୍ଚାରିତ ହୋଇଥାଏ । ତାର ଧ୍ୱନି ଶ୍ରବଣ କରି ମୂର୍ଖ ପାଷାଣ୍ଡ ହୃଦୟରେ ମଧ୍ୟ ଭକ୍ତିଭାବ ସଞ୍ଚାର କରେ ସେଥିପାଇଁ ଦେବୀଙ୍କ ନିକଟରେ ବୀଣା ଶୋଭାପାଉଛି । ଏହିଭଳି ଭାବରେ ଗତି କରୁ କରୁ ସେ କମଳାମ୍ବିକାଙ୍କ ନିକଟରେ ଉପସ୍ଥିତ ହୁଏ । ହେଇ ଲକ୍ଷ୍ୟକରି ଦେଖ ଶୁକ୍ର ମହାଗ୍ରହଙ୍କ ମଧ୍ୟରେ ମହାଦେବୀ କମଳା କିପରି ଅବସ୍ଥାନ କରିଛନ୍ତି ।

ନାରଦ ଶିବଙ୍କଆଡୁ ମୁଖ ଫେରାଇ ଆକାଶ ମାର୍ଗକୁ ନିରୀକ୍ଷଣ କଲେ । ରବି ମହାଗ୍ରହ ଅସ୍ତମିତ । ଉଜ୍ଜ୍ୱଳ ତାରକା ଶୁକ୍ର ତାଙ୍କ ଦୃଷ୍ଟି ପଥାରୂଢ଼ ହେଲେ । ଶୁକ୍ର ଗ୍ରହରେ ସେ ସ୍ପଷ୍ଟ ଦେଖିଲେ ପଦ୍ମଉପରେ ଏକ କନକବର୍ଣ୍ଣା ଦେବୀ ଆସିନା । ତାହାଙ୍କର ଦୁଇ ହସ୍ତରେ ଦୁଇଟି ପଦ୍ମପୁଷ୍ପ ଏବଂ ଅପର ଦୁଇ ହସ୍ତରେ ଅଭୟମୁଦ୍ରା ଓ ବରମୁଦ୍ରା । ଦେବୀଙ୍କର ଚତୁର୍ଦ୍ଦିଗରେ ହିମଗିରି ଭଳି ଚାରୋଟି ହସ୍ତୀ ସ୍ୱର୍ଣ୍ଣ ରତ୍ନ କଳସରେ ଅଭିଷେକ କରୁଛନ୍ତି । ଦେବୀଙ୍କ ଶିର ଦେଶରେ ରତ୍ନ ମୁକୁଟ ଶୋଭାପାଉଛି ।

ବେଦର ଲକ୍ଷ୍ମୀ ଏବଂ ତନ୍ତ୍ରର ଲକ୍ଷ୍ମୀ ଏକ ନୁହନ୍ତି ନାରଦ ! ବେଦରେ ଶ୍ରୀ ଏବଂ ଲକ୍ଷ୍ମୀ ଶବ୍ଦର ପ୍ରୟୋଗ ଥିଲେ ମଧ୍ୟ ଶ୍ରୀ ଏବଂ ଲକ୍ଷ୍ମୀ କେଉଁଠି ସୌଭାଗ୍ୟ ଦେବୀ ରୂପେ ବ୍ୟବହାର ହୋଇ ନାହାନ୍ତି ।

ସୌନ୍ଦର୍ଯ୍ୟ ବା ସୌନ୍ଦର୍ଯ୍ୟମୟୀ ରୂପେ ତନ୍ତ୍ର ଗ୍ରନ୍ଥମାନଙ୍କରେ ଶ୍ରୀ ଏବଂ ଲକ୍ଷ୍ମୀଙ୍କୁ ଗ୍ରହଣ କରାଯାଇଛି । ଅଥର୍ବବେଦ ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ମଧ୍ୟ ଲକ୍ଷ୍ମୀ ସୌଭାଗ୍ୟ ଦେବୀ ହୁଅନ୍ତି । କିନ୍ତୁ ମହାବିଦ୍ୟା କମଳା ବା ଲକ୍ଷ୍ମୀ ସମ୍ପଦ ଦାୟିନୀ ରୂପେ ପୂଜିତା । ବସ୍ତୁତଃ ଲୋକ ସମାଜରେ ଲକ୍ଷ୍ମୀ କେବଳ ସମ୍ପଦଦାୟିନୀ ରୂପେ ପୂଜା ପାଇନେ । ଆର୍ଯ୍ୟ ଓ ଅନାର୍ଯ୍ୟ ଦୁଇଗୋଷ୍ଠୀ ଏକ ହୋଇ ତନ୍ତ୍ରର ଦେବୀଙ୍କୁ ଏବଂ ବେଦର ଦେବୀଙ୍କୁ ଏକ ବୋଲି ଧରନେବେ ସେଥିପାଇଁ ବେଦ ଓ ତନ୍ତ୍ର ଗୋଟିଏ ସମ୍ପ୍ରଦାୟର ଶାସ୍ତ୍ର ବୋଲି ଧାରଣା କରାଯିବ । ବିଭିନ୍ନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଲକ୍ଷ୍ମୀଙ୍କୁ ବିଭିନ୍ନ ଦେବତାଙ୍କ ପତ୍ନୀ ଭାବେ ଦର୍ଶା ହେବ । କିନ୍ତୁ ମହାଲକ୍ଷ୍ମୀ ହିଁ ମହାଭୈରବୀ । ବେଦର ବ୍ରହ୍ମ, ତନ୍ତ୍ରର ଶକ୍ତି ଏକ ଏବଂ ଅଦ୍ୱିତୀୟ । ବ୍ରହ୍ମଙ୍କୁ ପୁରୁଷ ବୋଲି ଜ୍ଞାନ କରାଯାଏ । ପୁରୁଷର ଅହମିକା ଅଛି— ଶକ୍ତିର ଅହମିକା ନାହିଁ । ପୁରୁଷର ସେହି ଅହମିକା ଚୂର୍ଣ୍ଣ କରିବାକୁ ଯୁଗେ ଯୁଗେ ଶକ୍ତିଙ୍କର ଆବିର୍ଭାବ ହେବ ।

ଯେଉଁ ମହାବିଦ୍ୟା କାଳୀ ରୂପେ ଦୃଶ୍ୟ ହୋଇଥିଲେ ସେହି ମହାବିଦ୍ୟା ବର୍ତ୍ତମାନ ଲକ୍ଷ୍ମୀ ରୂପେ ଦର୍ଶନ ଦେଉଛନ୍ତି । ଜ୍ଞାନର ଶେଷସୀମା ଏହି ମହାଲକ୍ଷ୍ମୀ । ସେଥିପାଇଁ ସେ ଐଶ୍ୱର୍ଯ୍ୟମୟୀ ଓ ତାଙ୍କ ସ୍ୱର୍ଣ୍ଣ-ରତ୍ନ କାଞ୍ଚନ ଭରା । ସେଦିନ ଯେଉଁ ଆତ୍ମା ଅନ୍ଧାର ବକ୍ଷରେ ପ୍ରବେଶ କରି ନିଜେ ଅନ୍ଧ ହୋଇଯାଇଥିଲା ଆଜି ସେହି ଆତ୍ମା ଝମକ ପ୍ରକାଶ ମଧ୍ୟଦେଇ କମଳା ରୂପେ ଅବସ୍ଥାନ କରନ୍ତି । ମହାବିଦ୍ୟାଙ୍କ ଗୂଢ଼ତତ୍ତ୍ୱ ନ ଜାଣିଲେ ମହାଲକ୍ଷ୍ମୀଙ୍କ ବିଷୟ ଜାଣିହେବ ନାହିଁ । ତତ୍ତ୍ୱ ନ ଜାଣିଥିବା ବ୍ୟକ୍ତି କମଳାଙ୍କୁ ଦର୍ଶନ କରି ଏ ଯେ କାଳୀ, ତାରା, ଷୋଡ଼ଶୀ ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା ଓ ମାତଙ୍ଗୀ ଏହା ବିଶ୍ୱାସ କରିବ କିପରି । ଜୀବ ଜନ୍ମ ମରଣ ଚକ୍ରରୁ ଏହିଠାରେ ନିଷ୍କୃତି ପାଏ ଭୋଗତ୍ୟାଗ ସବୁସ୍ତର ଦେଇ ଆସି ଆସି ଯେ କମଳା ରୂପରେ ଅବସ୍ଥାନ କରିଛନ୍ତି ସେ ପୁଣି ନିମ୍ନ ଗର୍ତ୍ତରେ ନିମ୍ନଗାମୀ ହେବେ କାହିଁକି ? ଯେ ମହାସତ୍ତ୍ୱକୁ ଉପଲବ୍ଧି କରି ମତମାତଙ୍ଗ ଭଳି ନାଚୁଥିଲା ଗାଉଥିଲା, ଅନ୍ୟଙ୍କୁ ସେହି ପଥକୁ ଟାଣି ଆଣୁଥିଲା ସେ ଆଜି ପୁରାପୁରି ସେହି ମହାମରା ପାଲଟିଯାଇଛି । ଚତୁର୍ଦ୍ଦିଗରୁ ତା ପାଖକୁ ଲୋକେ ଛୁଟିଛନ୍ତି ତାହାର ଆଶୀଷ ପାଇଁ । ଯେ ଶୁଣୁଛି ସେ ଧାଉଁଛି । ଦେଖ ନାରଦ ତାହାର ନିଦର୍ଶନ ସ୍ୱରୂପ

ଚତୁର୍ଦ୍ଦିଗରୁ ଘୃଙ୍ଗେଟି ହସ୍ତୀ ତାଙ୍କୁ ରତ୍ନ କଳସ ଦ୍ୱାରା ଅଭିଷେକ କରୁଛନ୍ତି । କାହିଁକି ନା ସେ ହେଉଛନ୍ତି ଜ୍ଞାନଦାୟୀ, ସେ ହେଉଛନ୍ତି ଧନଦାତ୍ରୀ ।

ଭାରତ ଭୂତଖଣ୍ଡ ଓଡ଼ରାଷ୍ଟ୍ର ମଣ୍ଡଳସ୍ଥ ପୁରୁଷୋତ୍ତମ କ୍ଷେତ୍ରରେ ଅନେକଦିନ ପରେ ତୁମେ ତାଙ୍କୁ ଦର୍ଶନ କରିବ । ସେତେବେଳେ ମୁଁ ମହାଭୈରବ ଜଗନ୍ନାଥ ରୂପେ ସେଠାରେ ଅବସ୍ଥାନ କରିଥିବ । ମହାଭୈରବ ଜଗନ୍ନାଥ ଲୋକଜଗତର ପରମ ଆରାଧ୍ୟ ହେଲେ ମଧ୍ୟ ସର୍ବଦା ସେ ଲକ୍ଷ୍ମୀଙ୍କ ଦ୍ୱାରସ୍ଥ । ଶକ୍ତି ନଥିଲେ ମୁଁ ଶିବ, ଶବଭଳି ଶକ୍ତିହୀନ । ତାହାରି ଶକ୍ତି ଗ୍ରହଣ କରି ମୁଁ ଯୁଗେ ଯୁଗେ ଶକ୍ତିମାନ । ପ୍ରାଣହୀନ ଶବଭଳି ଶକ୍ତିହୀନ ଶିବ । ସେ କଣ ତାହା ଠିକ୍ ରୂପେ କହିବା ସମ୍ଭବ ନୁହେଁ । ସେ ମାୟା ସତ୍ୟ ନୁହେଁ ବୋଲି ଯେଉଁମାନଙ୍କର ଧାରଣା ସେମାନେ ତାର ବୈଚିତ୍ର୍ୟ ଭେଦକରି ପାରିଲେ ନାହିଁ । ଭାରତ ଖଣ୍ଡରେ ଶଙ୍କରାଚାର୍ଯ୍ୟ ନାମରେ ଜଣେ ମହାତ୍ମା ଆବିର୍ଭୂତ ହେଲେ । ସେ ହେବେ ମୋର ଉପାସକ । ତାଙ୍କର ଧାରଣାରେ ଶିବଙ୍କ ବ୍ରହ୍ମ-ଶକ୍ତି ଅନିତ୍ୟମାତ୍ର । ତେଣୁ ସେ ଶକ୍ତିଙ୍କୁ ମାନିବେ ନାହିଁ । ଫଳରେ ଶକ୍ତି ତାଙ୍କ ପ୍ରତି ନିର୍ଦ୍ଦୟା ହେବେ ।'

ଏକଦା ଶଙ୍କରାଚାର୍ଯ୍ୟ କାଶୀର ମଣିକର୍ଣ୍ଣିକା ଘାଟକୁ ସ୍ନାନକରିବା ନିମିତ୍ତ ଗମନ କରିବେ । ସେହି ସମୟରେ ଦେବୀ ହରଣ କରିବେ ତାଙ୍କ ଶକ୍ତି । ଫଳରେ ଶକ୍ତିହୀନ ହୋଇ ସେହି ଗଙ୍ଗା ତୀରରେ ପଡ଼ିରହିବେ । ହୃଦସ୍ଥ ସ୍ପନ୍ଦିତ ହେବାର ଶକ୍ତି ମଧ୍ୟ ତାଙ୍କର ନ ଥିବ । ଏହିଭଳି କିଛି ସମୟ ଗଲାପରେ ସ୍ୱୟଂ ଭଗବତୀ ଏକ ସାଧାରଣ ନାରୀବେଶରେ ଜଳ ଆଣିବା ପାଇଁ ଗମନ କରିବେ । ଦେବୀଙ୍କର ସାମାନ୍ୟ କଟାକ୍ଷରେ ଶଙ୍କରଙ୍କର ସାମାନ୍ୟ କଥା କହିବାର ଶକ୍ତି ସଞ୍ଚାର ହେବ । ସେତେ-ବେଳକୁ ତାଙ୍କ କଣ୍ଠ ତୃଷାରେ ଆତୁର ହୋଇପଡ଼ିବ । ସେ କେଉଁଭଳି ମାତ୍ର ଜଳପାଇଁ ଦେବୀଙ୍କୁ କାତର ପ୍ରାର୍ଥନା କରିବେ । ଦେବୀ କୃତ୍ରିମ ବିସ୍ମୟ ପ୍ରକାଶ କରି ତାଙ୍କୁ କହିବେ, କଣ ତୁମେ ଏହି ଜଳଘାଟ ନିକଟରେ ଶୋଇଛ, ତୁମର ହାତ ଅଛି । ସେହି ହାତଦ୍ୱାରା ନଦୀରୁ ଜଳନେଇ ତୁମେ ତୁମର ତୃଷା ନିବାରଣ କରି ପାରୁନାହଁ । ଦେବୀଙ୍କ କଥାର ଉତ୍ତର ଦେବାକୁ ଯାଇ ଆଚାର୍ଯ୍ୟ ସିଧା କହିବେ ମା' ! ମୋର ଶକ୍ତି ନାହିଁ ହସ୍ତ

ସଞ୍ଚାଳନ କରିବାକୁ । ଆଚାର୍ଯ୍ୟଙ୍କ କଥାଶୁଣି ଦେବୀ ବହୁତକର ହସିଉଠି କହିଲେ ଭ୍ରମେ କଣ ଶକ୍ତି ମାନଥାଅ ? ଏହାପରେ ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । ତାପରେ ଶଙ୍କରାଚାର୍ଯ୍ୟଙ୍କର ଜ୍ଞାନୋଦୟ ହେବ । ତତ୍ପରେ ସେ ହୃଦୟଙ୍ଗମ କରିବେ ଶକ୍ତିଦ୍ୱାରାହିଁ ସୃଷ୍ଟି ସ୍ଥିତି ପ୍ରଳୟାଦି ସବୁ ଏ ବିଶ୍ୱରେ ଘଟୁଛି । ଶକ୍ତି ନଥିଲେ ଶିବ ଶବ ହୁଅନ୍ତି । ତେଣୁ ସେ ଗାଇବେ—

ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ
ନଚେଦେବଂ ଦେବୋ ନଖଲୁ କୁଶଳଃ ସ୍ପନ୍ଦିତୁମପି
ଅତସ୍ତ୍ୱାମାରାଧ୍ୟାଂ ହରିହର ବିରିଞ୍ଚ୍ୟାଦିଭିରପି
ପ୍ରଣନ୍ତୁ ସ୍ତୋତୁଂ ବା କଥମକୃତ ପୁଣ୍ୟଃ ପ୍ରଭବତି ।

ମାତଃ ! ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି ତେବେ ସେ ପ୍ରଭବିଶାଳୀ ହୋଇ ସୃଷ୍ଟି ସ୍ଥିତିଲୟ ପ୍ରଭୃତି ସମସ୍ତକାର୍ଯ୍ୟ ନିର୍ବାହ କରନ୍ତି । ତାହା ନ ହେଲେ ସେ ନିଜେ ସ୍ପନ୍ଦିତ ହେବାକୁ ସମର୍ଥ ହୁଅନ୍ତି ନାହିଁ । ଜଗତର ସୃଷ୍ଟିସ୍ଥିତି ସଂହାରାଦି କରିବା ନିମିତ୍ତ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ଅନ୍ୟାନ୍ୟ ଦେବତା ପ୍ରଭୃତି ଆରାଧନା କରିଥାନ୍ତି । ଏଭଳି ଅବସ୍ଥାରେ ମୋପରି ସାମାନ୍ୟ ବ୍ୟକ୍ତି କିପରି ତୁମକୁ ପ୍ରଣାମ ବା ତୁମସ୍ତବ କରିବାକୁ ସମର୍ଥ ହେବ ।

ଦକ୍ଷଙ୍କ କନ୍ୟା ସତୀ ଜଗଜ୍ଜନନୀ । ମୁଁ ତାର କମଳାରୂପ ଦର୍ଶନ କରି ସେଦିନ ଭକ୍ତି ବିଭୋର ହୋଇପଡ଼ିଲି ଓ ସେ ମୋର ଜୀବନର ସର୍ବସ୍ୱ ବୋଲି ସେଦିନ ଅନୁଭବ କଲି । ବିଶ୍ୱର ଜୀବନ ଧାରଣ ନିମିତ୍ତ ସେ ବିଭିନ୍ନ ଶସ୍ୟରୂପେ ଦେଖାଦେବ । ତେଣୁ ଶସ୍ୟ ହିଁ କମଳା ଏହା ପ୍ରତ୍ୟେକଙ୍କର ଧାରଣା ହେବ । ଭିକାରୀ ବେଶରେ ମୁଁ ତାହାର ଦ୍ୱାରରେ ହିଁ ହାତ ପାତିବି । ଦକ୍ଷର କନ୍ୟା ଯକ୍ଷ ହେଲେ ମଧ୍ୟ ସେ କୃପଣ ହେବ ନାହିଁ ମୋତେ ଭିକ୍ଷାଦାନ କରିବାକୁ ।

ଦକ୍ଷର କନ୍ୟା ସତୀ । ତାର ସର୍ବଶେଷ ରୂପ କମଳା । ଯକ୍ଷ ବା ଧନପତିମାନେ ଯେଉଁଭଳି ବିଭବଶାଳୀ ସେହିଭଳି କମଳା ବିଭବଶାଳିନୀ । ଧନଠାରୁ ଜ୍ଞାନ ପର୍ଯ୍ୟନ୍ତ ସମସ୍ତର ଅଧିକାରିଣୀ ସେ । ଜୀବ ଯେତେବେଳେ କମଳାଭଳି ଧନ ଜ୍ଞାନର ଅଧିକାରୀ ହୋଇପାରିବ ସେତେବେଳେ ଆଉ

ତା'ର ଆବଶ୍ୟକ ତନ୍ତ୍ରରହିବ ନାହିଁ । ଜନ୍ମ ମରଣ ଯନ୍ତ୍ରଣାସମୂହ ଚକ୍ର ଏହିଠାରେ ହିଁ ଶେଷ ହୋଇଥାଏ ।

କୋଟି କୋଟି ଯକ୍ଷ ସେ ସୃଷ୍ଟି କରନ୍ତି । କିନ୍ତୁ ତାଙ୍କୁ ସେ ଜ୍ଞାନ ଦାନ କରନ୍ତିନାହିଁ । ଧନପତି ହେବାର ଯେଉଁ ମୋହ ସେ ମୋହରେ ସେମାନେ ମୋହିତ ହୋଇ ଜ୍ଞାନ ମହାଜ୍ଞାନ ଠାରୁ ଦୂରେଇ ରହିଥାନ୍ତି । ଯେତେ ବେଳେ ତାଙ୍କ ଭିତରେ ମହାଜ୍ଞାନ ଜାଗ୍ରତ ହୁଏ ସେତେବେଳେ ଯକ୍ଷଭାରୁ ସେମାନେ ମୁକ୍ତପାଆନ୍ତି । ଧନ ଲାଳସାର କଣ ଶେଷ ଅଛି ? ଯେତେ ରଖିଲେ ମଧ୍ୟ ଆହୁରି ଅଧିକ ରଖିବାର ମନୋବୃତ୍ତି ତାଙ୍କୁ ମଦ ନିଶାପରି ଘାରି ରହିଥାଏ । ଏହାଦ୍ୱାରା ନାନା ଦୁଃଖ କଷ୍ଟ ଭୋଗ କରିବାକୁ ହୁଏ । ଲାଳସାର ବିନାଶ ନ ହେଲେ ଦୁଃଖର ବିନାଶ ନାହିଁ । ଧନତୃଷ୍ଣା ମାନବକୁ ଶାନ୍ତିଦେଇ ପାରେନା । ଦେଇଥାଏ ଏକମାତ୍ର ଜ୍ଞାନ । ଜ୍ଞାନ ନ ଆସିଲେ ଏ ଜନ୍ମ ମୃତ୍ୟୁ ଚକ୍ରରୁ ମୁକ୍ତି ମିଳେ ନାହିଁ । ସେଥିପାଇଁ 'ଓଁ ଶ୍ରୀଂ କମଳାୟୈ ସ୍ୱାହା' ମନ୍ତ୍ର ଜପ କରି ତାଙ୍କୁ ଆରାଧନା କରାଯାଏ । ଚନ୍ଦ୍ର ମହାଗ୍ରହଙ୍କ କୁପ୍ରଭାବରୁ ରକ୍ଷା ପାଇବା ପାଇଁ ତାଙ୍କୁ ମଧ୍ୟ ଆରାଧନା କରାଯିବା ବିଧେୟ । ସୂର୍ଯ୍ୟ ଯେଉଁଭଳି ଅନ୍ଧକାର ବିନାଶ କରନ୍ତି ସେହିଭଳି କମଳା ଜଡ଼ତା ଅପସାରଣ କରନ୍ତି । ସରସ୍ୱତୀ ଏବଂ ଧନଦାତାଙ୍କର ଏକତ୍ରୀତ ରୂପ କମଳା । ତେଣୁ ଚାରୋଟି ଶ୍ୱେତହସ୍ତୀ ତାଙ୍କୁ ରତ୍ନ କଳସଦ୍ୱାରା ଅଭିଷେକ କରାଉଛନ୍ତି । ଶିବ ଯୁକ୍ତକରରେ କମଳାଙ୍କ ଧ୍ୟାନ ଗାଇଉଠିଲେ—

କାନ୍ତ୍ୟା କାଞ୍ଚନସନ୍ନିଭାଂ ହିମଗିରି ପ୍ରଖ୍ୟୈଶ୍ଚତୁର୍ଭିର୍ଗଜୈ
ହସ୍ତୋତ୍କ୍ଷିପ୍ତ ହିରଣ୍ମୟାମୃତ ଘଟୈରାସିଚ୍ୟମାନାଂ ଶ୍ରିୟଂ
ବିଭ୍ରାଣାଂ ବରମବ୍ଜଯୁଗ୍ମମଭୟଂ ହସ୍ତୈଃ କିରୀଟୋଜ୍ଜ୍ୱଳାଂ ।
କ୍ଷୌମାବଦ୍ଧ ନିତମ୍ବ ବିମ୍ବଲଳିତାଂ ବନ୍ଦେ ହରବିନ୍ଦ ସ୍ଥିତାଂ ॥

ଧ୍ୟାନରେ ଶିବ ପ୍ରଣାମ କଲେ ମହାଦେବୀଙ୍କୁ । ଶିବଙ୍କ ସହିତ ନାରଦ ମଧ୍ୟ ଦେବୀଙ୍କୁ ପ୍ରଣାମ ଜ୍ଞାପନ କଲେ । ପ୍ରଣାମ କରିସାରିଲା ବେଳକୁ ସୂର୍ଯ୍ୟ ପଶ୍ଚିମାକାଶରେ ଅସ୍ତମିତ । ବିଭିନ୍ନ ରବ ଦେଇ ଶିବଙ୍କ ଚତୁର୍ଦ୍ଦିଗରେ ଭୂତପ୍ରେତ ଘେରିଗଲେ । ଶୂନ୍ୟରେ ବାଜିଉଠିଲା ଶିବଗଣଙ୍କର ନବଲକ୍ଷ ଡମ୍ବରୁ । ସେହି ଡବ ଡବ ଶବ୍ଦ ମଧ୍ୟରେ ସୁପ୍ତବିଶ୍ୱର ଜାଗ୍ରତ ପାଇଁ ଶିଙ୍ଗାଧ୍ୱନୀ ଶୁଭିଯାଉଥାଏ । ଏହିସବୁ ଶବ୍ଦ ଭେଦ କରି ନାରଦଙ୍କ କର୍ଣ୍ଣକୁ

ଅସ୍ପଷ୍ଟ ଭାବେ ଶୁଭୁଥାଏ ସେ ମାତା-ସେ ଭଗ୍ନୀ ସେ ପତ୍ନୀ । ତା ବ୍ୟତୀତ ଏ ଦଶ ଶକ୍ତିସ୍ଥାନ ଆପୂରକ ଶକ୍ତି ତାହାର ମଧ୍ୟରୁ ଆସେ ପୁନର୍ବାର ଦେଶଭକ୍ତି ମଧ୍ୟ ତାହାର ମଧ୍ୟରୁ ଆତ୍ମପ୍ରକାଶ କରେ । ସମସ୍ତ ତାହାର ମଧ୍ୟରେ ଅବସ୍ଥାନ କରନ୍ତି । ସେ ତନ୍ତ୍ରର ଶକ୍ତି ଏବଂ ବେଦର ବ୍ରହ୍ମ । ସେ ଭାରତ ବର୍ଷର ଉତ୍କଳଦେଶେ ବିଶେଷ ଭାବେ ଆତ୍ମପ୍ରକାଶ କରିବେ । ତେଣୁ ଭାରତର ପ୍ରଥମ ତନ୍ତ୍ରପୀଠ ହେବ ଉତ୍କଳଦେଶ । ସମସ୍ତ ତୀର୍ଥ ସମସ୍ତ ଦେବତା ସେହି କ୍ଷେତ୍ରରେ ଆତ୍ମପ୍ରକାଶ କରିବେ ।

ନାରଦଙ୍କ ମନ ଫେରିଗଲା ସେହି ଦଶ ମହାବିଦ୍ୟାଙ୍କ ନିକଟକୁ । କାଳୀଠାରୁ କମଳା ପର୍ଯ୍ୟନ୍ତ ପ୍ରତ୍ୟେକଙ୍କ ସ୍ୱରୂପ ମନନେତ୍ରରେ ଦର୍ଶନ କରି ପ୍ରଦକ୍ଷିଣ କଲବେଳକୁ ସେ ସେଠାରେ ଆଉ ଶିବ ଓ ଶିବଗଣଙ୍କୁ ଦେଖିବାକୁ ପାଇଲେ ନାହିଁ । ତାଙ୍କର ଡମ୍ବରୁ ଶିଙ୍ଗାଧ୍ୱନୀ ମଧ୍ୟ ଶୁଭୁନଥିଲା ନାହିଁ । ସେ କେବଳ ନିର୍ଜନ ଗିରିକନ୍ଦର ମଧ୍ୟରେ ଏକାକୀ ଦଣ୍ଡାୟମାନ ହୋଇଥିବା ଅନୁଭବ କଲେ ।

---

